

ଆନଂଦ ଚଂଦ୍ର ପହି

# ଖାଲିହାତର ଛବି

# ଶାରିହାତର ଛବି

(ଦୁଇଟି ନାଟକ ଏକତ୍ର)

ନାଟ୍ୟକାର :
ଆନନ୍ଦ ଚନ୍ଦ୍ର ପତି

ପ୍ରଥମ ପ୍ରକାଶ :
୨୦୦୦ ମସିହା

ପ୍ରକାଶିକା :
ଅନୁଲତା ପତି,
ଏଲ.୧୭୮, ଭୀମଟାଙ୍ଗି-I
ଭୁବନେଶ୍ୱର-୭୫୧୦୧୨
ଫୋନ୍ : ୫୬୦୪୮୨

ପ୍ରଚ୍ଛଦ :
ଆଶିଷ କୁମାର ପତି

ମୁଦ୍ରଣ :
ଓଁକାର, ଏମ୍-୫/୨,
ଆଚାର୍ଯ୍ୟବିହାର, ଭୁବନେଶ୍ୱର

ମୂଲ୍ୟ :
୫୫ ଟଙ୍କା

ପ୍ରାପ୍ତିସ୍ଥାନ :

- ସୁବର୍ଣ୍ଣ ରେଖା, କଟକରୋଡ, ଭୁବନେଶ୍ୱର
- ବିଦ୍ୟାଭାରତୀ, ସିନେମା ବଜାର, ବାଲେଶ୍ୱର
- ଭାରତୀ ବୁକ୍ ଷ୍ଟୋର, ଝାଞ୍ଜିର ମଙ୍ଗଳା, କଟକ
- ଓଡ଼ିଶା ଲେଖକ ସମବାୟ ସମିତି, ଭୁବନେଶ୍ୱର

ବିଶିଷ୍ଟ କଥାକାର, କବି ଓ ଶିଶୁ ସାହିତ୍ୟିକ, ଅନୁଜୋପମଙ୍କ
ଶ୍ରୀଯୁକ୍ତ ରମେଶଚନ୍ଦ୍ର ଧଳଙ୍କୁ ଏ ପୁସ୍ତକଟି ସମର୍ପିତ ।

ଅନନ୍ତ ଚନ୍ଦ୍ର ପତି

# ନାଟକ ଦୁଇଟି ସଂପର୍କରେ

ଏଇ "ଖାଲିହାତର ଛବି" ପୁସ୍ତକରେ ଦୁଇଟି ସ୍ୱତନ୍ତ୍ର ନାଟକ ସ୍ଥାନୀତ ହୋଇଛି । 'ଖାଲିହାତର ଛବି' ନାଟକଟି ମୋର କ୍ଷୁଦ୍ରଗଳ୍ପ "ଖାନ୍‌ତଲାସ"ର ନାଟ୍ୟରୂପ । ଏହି ନାଟକଟି "ଖାନ୍‌ତଲାସ" ନାଆଁରେ ୧୯୯୭ ମସିହାରେ ଆକାଶବାଣୀ, କଟକଙ୍କ ସୌଜନ୍ୟରୁ ପ୍ରସାରିତ । ଏହା ପୂର୍ବରୁ ଏହି "ଖାନ୍‌ତଲାସ" ନାଟକଟି ସଚିବାଳୟ ଆନ୍ତଃବିଭାଗୀୟ ନାଟକ ପ୍ରତିଯୋଗିତା, ୧୯୯୫ରେ ଶକ୍ତି ବିଭାଗ ସାଂସ୍କୃତିକ ପରିଷଦ ଦ୍ୱାରା ରବୀନ୍ଦ୍ରମଣ୍ଡପଠାରେ ମଞ୍ଚସ୍ଥ ହୋଇ ଉଚ୍ଚ ପ୍ରଶଂସା ଲାଭ କରିଛି । କିନ୍ତୁ ଏହି 'ଖାନ୍‌ତଲାସ' ନାଆଁଟି ପରିବର୍ତ୍ତନ କରି ମୁଁ ଏହାର ନୂଆ ନାଆଁ ଦେଇଛି "ଖାଲିହାତର ଛବି" । ୧୯୯୯ ମସିହା ପୂଜାସଂଖ୍ୟା ସାହିତ୍ୟ ପତ୍ରିକା "ଚନ୍ଦ୍ରଭାଗା"ରେ "ଖାଲିହାତର ଛବି" ନାଟକଟି ପ୍ରକାଶିତ ହୋଇ ବହୁ ସମାଲୋଚକ ଓ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିଛି ।

"ଖାଲିହାତର ଛବି" ନାଟକର ଘଟଣାର ଅବଧି ଯେତିକି ନାଟକର ଅଭିନୟ ସମୟ ମଧ ଠିକ୍ ସେତିକି । ଏହା ଗୋଟିଏ ଦୃଶ୍ୟର ନାଟକ ।

ଏ ପୁସ୍ତକରେ ଥିବା ଦ୍ୱିତୀୟ ନାଟକ "ଯନ୍ତା" ମୋ କ୍ଷୁଦ୍ରଗଳ୍ପ "ଯନ୍ତା"ର ନାଟ୍ୟରୂପ । ଏହି ନାଟକଟି ୧୯୯୪ ମସିହାରେ ଆକାଶବାଣୀ, (ବିଜ୍ଞାପନ ପ୍ରସାରଣ ସେବା) କଟକଙ୍କ ସୌଜନ୍ୟରୁ ପ୍ରସାରିତ । ଏହି ନାଟକର ନାମଟି ବଦଳାଇବାକୁ ମୋର କିଛି ନାଟ୍ୟକାର ବନ୍ଧୁ ପ୍ରସ୍ତାବ ଦେଇଥିଲେ, କାରଣ "ଯନ୍ତା" ନାମରେ ଅନ୍ୟ ଗୋଟିଏ ନାଟକ ଅଛି । କିନ୍ତୁ ମୋ ନାଟକ ପାଇଁ 'ଯନ୍ତା' ନାମଟି ଏତେ ଉପଯୁକ୍ତ ଯେ ଏହାର ନାମ ପରିବର୍ତ୍ତନ କରିବାକୁ ମୁଁ ଉଚିତ ମନେ କଲିନାହିଁ । ଆଶା କରେ ଭବିଷ୍ୟତରେ ଦର୍ଶକ ଓ ସମାଲୋଚକମାନେ ମୋତେ ଭୁଲ ବୁଝିବେ ନାହିଁ ।

'ଯନ୍ତା' ନାଟକଟି ଏ ପୁସ୍ତକରେ ପ୍ରକାଶିତ ହେବା ପୂର୍ବରୁ ମଞ୍ଚସ୍ଥ

ହେବାର ଗୌରବ ଲାଭ କରିନାହିଁ । କିନ୍ତୁ ଏହି ନାଟକଟିକୁ ସଫଳଭାବେ ମଞ୍ଚସ୍ଥ କରାଯାଇ ପାରିବ ।

ଏ ଦୁଇଟିଯାକ ନାଟକ ମଧ୍ୟରୁ 'ଖାଲିହାତର ଛବି' ପ୍ରଥମେ ମଞ୍ଚ ପାଇଁ ଲେଖାଯାଇ ମଞ୍ଚସ୍ଥ ହୋଇଛି ।

କିନ୍ତୁ 'ଯନ୍ତା' ନାଟକଟି ପ୍ରଥମେ ବେତାର ପାଇଁ ଲେଖା ଯାଇଥିଲା । ପରେ ମୁଁ ଉକ୍ତ ନାଟକର ମଞ୍ଚରୂପ ପ୍ରଦାନ କରିଛି ।

ଆଶାକରେ ଏହି ନାଟକ ଦୁଇଟି ବିଭିନ୍ନ ମଞ୍ଚରେ ସଫଳ ଭାବେ ଅଭିନୀତ ହୋଇ ଦର୍ଶକମାନଙ୍କ ଶ୍ରଦ୍ଧା ଭାଜନ ହେବ ।

ଏହି ପୁସ୍ତକଟିର ପ୍ରଚ୍ଛଦ ମୋ ପୁଅ ପ୍ରତିଭାଧର ଚିତ୍ରଶିଳ୍ପୀ ଆଶିଷ କୁମାର ପହି ଅଙ୍କନ କରିଛି ଏବଂ ଏ ପୁସ୍ତକର ପ୍ରକାଶନ ଦାୟିତ୍ୱ ମୋର ସାହିତ୍ୟାନୁରାଗୀ ସହଧର୍ମିଣୀ ଅରୁନ୍ଧତୀ ପହି ଗ୍ରହଣ କରିଛନ୍ତି । ଉଭୟଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ନିହଲ ପ୍ରସାଦ ଆନନ୍ଦ ଚନ୍ଦ୍ର ପହି

ତା : ୧୫.୦୯.୨୦୦୦

# ନାଟକ ସୂଚୀ

# ଖାଲି ହାତର ଛବି

ନାଟକଟି ୧୯୯୫ ମସିହାରେ ସଚିବାଳୟ ଆନ୍ତଃବିଭାଗୀୟ ନାଟକ ପ୍ରତିଯୋଗିତାରେ ଶକ୍ତି ବିଭାଗର କର୍ମଚାରୀମାନଙ୍କ ଦ୍ୱାରା ଭୁବନେଶ୍ୱରସ୍ଥ ରବୀନ୍ଦ୍ରମଣ୍ଡପରେ ମଞ୍ଚସ୍ଥ ହୋଇଥିଲା । ସେତେବେଳେ ଏହି ନାଟକର ନାମ ରଖାଯାଇଥିଲା "ଖାନ୍‌ତଲାସ" । ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ :-

- ରାଧାମୋହନ ଜେନା
- ବାଳକୃଷ୍ଣ ସ୍ୱାଇଁ
- ସୁବୋଧ ନାୟକ
- ବଳଭଦ୍ର ସାହୁ
- ନରେନ୍ଦ୍ର ସାମଲ
- ବିଶ୍ୱନାଥ ସେଠି
- ଦୀନବନ୍ଧୁ ପଣ୍ଡା
- ଦୀନେଶ କୁମାର ସାହୁ
- ସୁଶାନ୍ତ ମହାନ୍ତି
- ଉମାକାନ୍ତ ଖୁଣ୍ଟିଆ
- ତ୍ରିଲୋଚନ ବରାଳ
- ଉମା

---

ନିର୍ଦ୍ଦେଶନା : ରାଧାମୋହନ ଜେନା



ଏହି ନାଟକଟି ଆକାଶବାଣୀ, କଟକ କେନ୍ଦ୍ର ସୌଜନ୍ୟରୁ ୨୩.୩.୯୭ ତାରିଖରେ ପ୍ରସାରିତ ହୋଇଥିଲା । ଆକାଶବାଣୀରୁ ପ୍ରସାରିତ ହେବାବେଳେ ଏହାର ନାମ ଥିଲା 'ଖାନ୍‌ତଲାସ' । ନାଟକର ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ :

- ଅନନ୍ତ କୁମାର ଦାସ
- ହିମାଂଶୁ ସାମଲ
- ମନୋରଂଜନ ବେହେରା
- ପଦ୍ମନାଭ ନାୟକ
- ସୁବାସଚଂଦ୍ର ବିଶ୍ୱାଳ
- ଜୟଶ୍ରୀ ବ୍ରାଉନ
- ଆଲୋକ କୁମାର ମହାନ୍ତି
- ଶରତଚଂଦ୍ର ମୂଳିଆ
- ନିର୍ମଳ କୁମାର ମହାପାତ୍ର

ଶିଶୁକଳାକାର

- କୁମ୍ କୁମ୍ ଦାସ
- ବିକ୍ରମ ସାମଲ

---

ନିର୍ଦ୍ଦେଶନା - ଗିରୀଶ ଚଂଦ୍ର ନାୟକ

# ଖାଲିହାତର ଛବି

(ମଦନପୁର ଗାଆଁ । ଭୋର୍ ସମୟ । ସାମାନ୍ୟ ଅନ୍ଧାର ଅଛି । କୁକୁଡ଼ା ଓ କାଉ ରାବିବା ଶବ୍ଦ ଶୁଭୁଛି । ଅଳସ ଭାଙ୍ଗି ନିଦରୁ ଉଠିଲା ହରି ନାୟକର ସ୍ତ୍ରୀ ବିମଳି । ଘରର କବାଟ ଖୋଲି ବାହାରକୁ ଆସିଲା । ପହଁରା ଧରି ଦୁଆର ଓଳାଇଲାବେଳେ ପୋଲିସ ଫଉଜ ତାଙ୍କ ଘର ଚାରିପାଖ ଘେରାଉ କରିଥିବା ଦେଖି ହଠାତ୍ ଚମକିପଡ଼ି ଘରଆଡ଼କୁ ଧାଇଁଲା ।)

ବିମଳି : ଇଲୋ ମୋ ବୋଉଲୋ !

(ଏତିକିବେଳେ ଘର ଭିତରୁ ବାହାରୁଥିଲା ହରିଆ । ବିମଳି ହାଉଳିଖାଇ ତା'ଠି ବାଡ଼େଇ ହେଲା ଓ ହରିଆକୁ ଭୟରେ କୁଣ୍ଢେଇ ଧରିଲା)

ହରିଆ : କ'ଣ ହେଲା ? ଏମିତି ହାଉଳି ଖାଇଲୁ କାହିଁକି ?

ବିମଳି : (ବାହାରକୁ ହାତ ଦେଖାଇ) ପୁ.......ପୁ.........ପୁ......

ହରିଆ : କ'ଣ ହେଲା ? କିଲୋ, ଗୋଟାପଣେ ଏମିତି ଥରୁଚୁ କାଇଁକି ?

ବିମଳି : ପୁ......ପୁ..... ପୁଲିସି, ପୁଲିସି ।

ହରିଆ : ପୁଲିସି ? କାଇଁ, କୋଉଠି ?

(ହରିଆ ବିମଳି ହାତ ଦେଖାଇଥିବା ଦିଗକୁ ଯାଉଥିଲା । ତାକୁ ବିମଳି ପଛରୁ ଟାଣି ଧରିଲା ।)

ବିମଳି : ନାଇଁ, ତମେ ଯାଆନା । ଆମ ଘର ଚାରିପଟେ ପୁଲିସି । ତମକୁ ବାନ୍ଧିନବ ।

ହରିଆ : ତୁ କ'ଣ ପାହାନ୍ତିଆ ସପନ ଦେଖିଲୁ କି ? କିଲୋ ଆମ ଘର ଚାରିପଟେ ପୁଲିସି କାଇଁକି ଘେରୋଉ କରିବ ?

ବିମଳି : (ଚାପା ଚାପା କଣ୍ଠରେ) କେତେ ନାଇଁ କେତେ ପୁଲିସି ବନ୍ଧୁକ ଧରି ଆମ ଘର ଚାରିକଡ଼େ ଠିଆ ହେଇଚନ୍ତି । ମତେ ଭାରି ଡର ମାଡୁଚି । ତାଙ୍କ ବନ୍ଧୁକ ଆଗରେ ହାତେ ଦେଢ଼ ହାତ ଲମ୍ବର ଗୋଟେ ଗୋଟେ ଛୁରୀ । ତମେ ଆମର ଘର ଭିତରକୁ ପଳେଇ ଆସ । (ବିମଳି ହରିଆକୁ ଟାଣି ଟାଣି ଘର ଭିତରକୁ ନେଇଗଲା)

ହରିଆ : ଛଇ, ଛାଡ଼ । ଛାଡ଼ ମତେ, ମୁଁ ଦେଖେ ।

ବିମଳି : ନା, ତମେ ସିଆଡ଼େ ଯାଆନା, ଏଇଠୁ ଦେଖ ।

(ହରିଆ ଓ ବିମଳି ଘର ଭିତରେ ପଶି କବାଟ ଦରଆଉଜା କରି କବାଟ ଫାଙ୍କରେ ଚାହିଁଲେ ।)

ବିମଳି : ଅଜେଇଲ, ସେଇଠିକି ଅନା ।

ହରିଆ : ଆରେ ସତେତ । (ଡରି ଯାଇ) ଏତେ ପୁଲିସି ! ମୁଁ ..... ମୁଁ ...... ମୁଁ ତ କିଛି ବୁଝିପାରୁ ନେଇଁ । ଆମ ଘରକୁ ପୁଲିସି କାଇଁକି ଘେରୋଇ କରିଚି ?

ବିମଳି : ତମେ କୋଉଠି କ'ଣ କରିଥିବ ?

ହରିଆ : କ'ଣ କରିଥିବି ? ଚୋରି, ଡକାଇତି ?

ବିମଳି : ମୁଁ କେମିତି କହିବି ?

ହରିଆ : ମୁଁ ସତ କହୁଚି, କୋଉଠି କିଛି କରି ନେଇଁ ।

ବିମଳି : ଭଲ କି ମନେ ପକା ।

ହରିଆ : ତୁ ତାହେଲେ ମତେ ଅବିଶ୍ୱାସ କରୁଚୁ ? ତୁ ମୋ ସାଙ୍ଗରେ ଏତେ ବରଷ ଘର ସଂସାର କଲୁଣୁ । ମୋ ଉପରେ କ'ଣ ତୋର ଟିକେ ହେଲେ ପତିଆରା ନାହିଁ ?

ବିମଳି : ଆଇ ତା'ହେଲେ ଏତେ ପୁଲିସି ଆମ ଘରକୁ କାଇଁକି ଆଇଲେ ? ତମେ କାହାକୁ କୋଉଠି ମାରଧର କରିନା ତ ?

ହରିଆ : ତୋ କିହ ଛୁଇଁଚି ରମାବୋଉ । ମୁଁ କୋଉଠି କିଛି କରି ନେଇଁ ।

ବିମଳି : ହେଇ, କିଏ ଇଆଡକୁ ଆଇଲାଣି । ତମେ ଭିତରେ ଲୁଚି ଯା ।

(ବିମଳି କବାଟକୁ ଧଡ଼ କରି ବନ୍ଦ କରି ଦେଲା । ପୋଲିସର ଯୋତା ମଚ ମଚ ଶବ୍ଦ ଶୁଭିଲା । ମଞ୍ଚ ଉପରକୁ ଆସିଲେ ପୁଲିସ୍ ଇନ୍‌ସ୍‌ପେକ୍ଟର ଓ ଇନ୍‌କମ୍‌ଟ୍ୟାକ୍ସ ଅଫିସର । ପୋଲିସ ଇନ୍‌ସ୍‌ପେକ୍ଟର ହରିଆର କବାଟକୁ ଠକ୍‌ଠକ୍ କରି ବାଡ଼େଇଲେ ।)

ପୋଲିସ ଇନ୍‌ସ୍‌ପେକ୍ଟର : ହରି ନାୟକ ଘରେ ଅଛି ?

(କେହି କିଛି ଉତ୍ତର ଦେଲେ ନାହିଁ । କବାଟକୁ ଆଉ ଦୁଇଥର ପିଟିଲେ ।) ହରି ନାୟକ ! ଆବେ ଘରୁ ବାହାରୁଚୁ ନା ଆମେ

କବାଟ ଭାଙ୍ଗି ଘରେ ପଶିବୁ ? (ତଥାପି କବାଟ ଖୋଲିଲା ନାହିଁ ।)

ଇନ୍‌କମ୍‌ଟ୍ୟାକ୍ସ

ଅଫିସର : ଘରଟା ଭିତରୁ ବନ୍ଦ ଅଛି । ହରି ନାୟକ ଘା ଭିତରେ ଅଛି ନିଶ୍ଚୟ ।

ପୋ.ଇ. : ତା’ ସ୍ତ୍ରୀ ଏଇଲେ ପଦାକୁ ଆସିଥିଲା ମୁଁ ଦେଖିଛି । (ପୁଣି ଥରେ କବାଟ ପିଟିଲେ) ହରି ନାୟକ ! ହରି ନାୟକ !

ଇ.ଅ. : ଡେରି କଲେ ବଦମାସଟା କୁଆଡ଼େ ଲୁଚି ଯାଇପାରେ । ଆପଣ ଶୀଘ୍ର କବାଟ ଭାଙ୍ଗିବାର ବ୍ୟବସ୍ଥା କରନ୍ତୁ ।

(ଏହି ସମୟରେ ବିମଳି ଧୀରେ ଧୀରେ କବାଟ ଖୋଲି ପଦାକୁ ଆସିଲା ଓ କବାଟ ବନ୍ଦ କରି ଦେଲା । ତୁଆର ମୁହଁରେ ଓଢ଼ଣା ଟାଣି ଠିଆ ହେଲା ।)

ପୋ.ଇ : ହରିନାୟକ କୁଆଡ଼େ ଗଲା ?

ବିମଳି : ସିଏ ଘରେ ନାହାଁନ୍ତି ।

ପୋ.ଇ : ଘରେ ନାହିଁ ? ସେ ଚାଲାକି ରଖ୍ ଦେଇଥା । ଆମେ ତ କାଲି ରାତି ଚାରିଟା ବେଳୁ ତମ ଘର ଚାରିପଟେ ପୋଲିସ ଜଗେଇଛୁ । ସିଏ ଯିବ ଆଉ କୁଆଡ଼େ ? କାଲି ରାତିରେ ସିଏ ଘରେ ଥିଲା ?

ବିମଳି : ନା ।

ଇ.ଅ : କୁଆଡ଼େ ଯାଇଚି ?

ବିମଳି : ମଧୁପୁର ଯାଇଚନ୍ତି ।

ପୋ.ଇ : ମିଛ କଥା, ମୁଁ ତମ ଗାଆଁ ଲୋକଙ୍କୁ ପଚାରି ବୁଝିଛି ହରିନାୟକ କାଲି ଘରେ ଥିଲା ।

ବିମଳି : ନାଇଁ ବାବୁ, ସିଏ ଘରେ ନାହାଁନ୍ତି ।

ପୋ.ଇ : ଘର ଖାନତଲାସ କଲେ ବଳେ ଜଣା ପଡ଼ିଯିବ !

ଇ.ଅ : ଆପଣ ସେ ଖାନ୍‌ତଲାସ ଅର୍ଡରଟା ଦେଖେଇ ଦିଅନ୍ତୁ ।

ବିମଳି : ଖାନ୍‌ତଲାସ କଣ ?

ପୋ.ଇ : (ପକେଟ୍‌ରୁ ଅର୍ଡର କାଗଜ ବାହାର କରି) ଏଇଟା ତମ ଘର ଖାନ୍‌ତଲାସ ଅର୍ଡର, ନିଅ ଦେଖ ।

ବିମଳି : ମୁଁ କ’ଣ ପାଠ ପଢ଼ିଚି ଯେ ଦେଖିବି ?

ଇ.ଥ : ତମ ଘର ଆମେ ତଲାସ କରିବୁ, ଏଇଟା ସେଇ ହୁକୁମ କାଗଜ ।

ବିମଳି : ସିଏତ ଘରେ ନାହାଁନ୍ତି ତମେ କେମିତି ତଲାସ କରିବ କର । ମୁଁ ଏକୁଟିଆ ମାଇକିନା ଲୋକ, ଏସବୁ କଥା ମୁଁ କିଛି ଜାଣିନେଇଁ ।

ପୋ.ଇ : ହରିନାୟକ ଥାଉ କି ନଥାଉ ଆମେ ସରକାରୀ ହୁକୁମ ପାଇଛୁ । ତମ ଘର ଖାନତଲାସ କରିବୁ ।

ବିମଳି : କାଇଁକି ବାବୁ ? ସିଏ କ'ଣ କୋଉଠୁ ଚୋରି କରିଚନ୍ତି ନା ମଣିଷ ମାରିଚନ୍ତି ?

ପୋ.ଇ : ନାଇଁ, ନାଇଁ ସିଏ ସେସବୁ କିଛି କରିନେଇଁ ।

ହରିଆ : (କବାଟ ଖୋଲି ପଦାକୁ ଚାଲି ଆସିଲା) ଥାଉ ତାହେଲେ କାଇଁକି ମୋ ଘର ଖାନତଲାସ କରିବ ?

ପୋ.ଇ : (ବିମଳି ପ୍ରତି)ତମେ ପରା ଏଇନେ କହୁଥିଲ ହରି ନାୟକ ଘରେ ନାହିଁ ବୋଲି ? ଇଏ ପୁଣି କୋଉଠୁ ବାହାରିଲା ?

ଇ.ଥ : ପକ୍କା ବଦମାସ ଅଛି ଏ ସ୍ତ୍ରୀ ଲୋକ ।

ହରିଆ : ବଦମାସ କ'ଣ ବାବୁ ? ଆମେ କ'ଣ କାହାର କିଛି ଖାଇଚୁ ନା ଧାରିଚୁ ?

ପୋ.ଇ : ନାଇଁ ତୁ ଭାରି ଭଲଲୋକ ? ଚୁପ୍‌ଚାପ୍ ସେଇଠି ଠିଆ ହୋ । ମୁଁ ଯାହା ପଚାରୁଚି ଠିକ୍ ଠିକ୍ ଜବାବ ଦେ । ଦେଖୁଚୁ ଏ ବନ୍ଧୁକ ?

ହରିଆ : (ହାତଯୋଡ଼ି) ହଜୁର ।

ପୋ.ଇ : ତୋ ନାଆଁ ?

ହରିଆ : ହରିଆ ନାୟକ ।

ପୋ.ଇ : ହରିଆ ନାୟକ ନା ହରି ନାୟକ ?' ସରକାରୀ ରେକର୍ଡ ପତ୍ରରେ ତୋ ନାଆଁ କ'ଣ ଅଛି ?

ହରିଆ : ରୋକଡ଼ କ'ଣ ବାବୁ ?

ଇ.ଥ : ରେଭିନିଉ ରେକର୍ଡ, ସ୍କୁଲ ସାର୍ଟିଫିକେଟ ଏସବୁଥିରେ ତୋ ନାଆଁ କ'ଣ ବୋଲି ଲେଖାଯାଇଚି ? ହରି ନାୟକ ନା ହରିଆ ନାୟକ ?

ହରିଆ : ରେଭୁନୁ ରୋକଡ କ'ଣ ମୁଁ ଜାଣିନେଇଁ । ମୁଁ ଇସିକୋଲରେ ପାଠ ପଢ଼ିନେଇଁ ।

ପୋ.ଇ. : ଭୋଟର ଲିଷ୍ଟରେ ତୋ ନାଆଁ କ'ଣ ଅଛି ?

ହରିଆ : ମୁଁ କେମିତି ଜାଣିବି ? ମୁଁ ତ ପାଠ ପଢ଼ି ନେଇଁ ।

ଇ.ଅ : ହରିଆ ନାୟକ ଯାହା ହରିନାୟକ ସେଇଆ । ସେକଥା ଛାଡନ୍ତୁ ଅଭିଜିତବାବୁ ।

ପୋ.ଇ : ଠିକ୍ ଅଛି । ତୋ ବୟସ କେତେ ?

ହରିଆ : ଦି' କୋଡ଼ିକି ପାଞ୍ଚ ବରଷ ଊଣା ।

ପୋ.ଇ : ମାନେ ପଇଁତିରିଶ ହବ ।

ଇ.ଅ : ଏ ଗାଆଁରେ ତମର ଏଇ ଗୋଟିକ ଘର ନା ଆଉ କୋଉଠି ଅଛି ?

ହରିଆ : ଏଇ ଗୋଟିକ ।

ଇ.ଅ : କଟକ, ଭୁବନେଶ୍ୱର କି ଆଉ କୋଉ ଟାଉନ୍‌ରେ ତମର ଘର ଅଛି ?

ହରିଆ : ନା, ଆଉ କୋଉଠି ନାହିଁ । ଏଇ ଚାଳ ଛପର ଘର ଖଣ୍ଡକ ବି ମୁଁ ଫି ବରଷ ଛପର କରିପାରୁ ନେଇଁ ।

ବିମଳି : ଏତେ କଥା ତମେ ଆପଣ କାଇଁକି ପଚାରୁଚ ?

ପୋ.ଇ : ତୁ ଚୁପ୍‌ଚାପ୍ ଠିଆ ହୋ ।

ଇ.ଅ : ତୁମ ଶ୍ୱଶୁରଘର କୋଉ ଗାଆଁରେ ?

ହରିଆ : ଏଠୁ ଦଶବାର କୋଶ ବାଟ । ମଥାନପୁର ।

ଇ.ଅ : ତମ ଶ୍ୱଶୁରଙ୍କ ନାଆଁ କ'ଣ ?

ହରିଆ : ମହନି ଜେନା ।

ଇ.ଅ : ମାନେ ମହେନ୍ଦ୍ର ଜେନା ?

ବିମଳି : ନାଇଁ, ମୋହନ ଜେନା ।

ପୋ.ଇ : ତମର ଆଉ ଭାଇ ଅଛନ୍ତି ?

ହରିଆ : ନା ।

ଇ.ଅ : ଠିକ୍ ଅଛି, ତମେ ସେ କଡ଼କୁ ଠିଆ ହୁଅ । ତମ ଘର ଆମେ ଖାନ୍‌ତଲାସ କରିବୁ ।

ହରିଆ : କାଇଁକି ବାବୁ ? ମୁଁ କି ଦୋଷ କରିଚି ?

ପୋ.ଇ : ତୁ କିଛି ଦୋଷ କରିନଉ । କଥା କ'ଣ କି ଇଏ ହଉଚନ୍ତି ଇନ୍‌କମ୍ ଟ୍ୟାକ୍ସ ଅଫିସର, ମାନେ ଆୟକର ଅଫିସର । ତାଙ୍କ ପାଖରେ ଖବର ପହଞ୍ଚିଚି ତୋ ଘରେ କୁଆଡ଼େ ତୋ ଆୟ ବହିର୍ଭୂତ ବହୁତ ସଂପତ୍ତି ଅଛି ।

ଆନଂଦ ଚଂଦ୍ର ପତି

ହରିଆ : ସିଏ କ'ଣ ବାବୁ ?

ଇ.ଅ : ମାନେ ତୁମ ରୋଜଗାରଠାରୁ ଢେର୍ ଅଧିକ ଧନ, ସଂପତ୍ତି ତମ ଘରେ ଅଛି ବୋଲି ସରକାରଙ୍କୁ ରିପୋର୍ଟ ମିଳିଛି । ସେଇ ଧନ ସଂପତ୍ତିକୁ ବାହାର କରିବା ପାଇଁ ତମ ଘର ଖାନ ତଲାସ ହବ ।

ହରିଆ : ଆପଣ ଭୁଲ ଜାଗାରେ ପହଞ୍ଚିଛନ୍ତି ବାବୁ । ମୁଁ ନିହାତି ଗରିବ ଲୋକ । ମୋ ଘରେ କିଛି ନାହିଁ ।

ପୋ.ଇ : ଠିକ୍ ଜାଗା କି ଭୁଲ୍ ଜାଗା ଖାନତଲାସ ହେଲେ ଜଣା ପଡ଼ିଯିବ ।

ବିମଳି : (କାନ୍ଦିକାନ୍ଦି) ଏସବୁ ଡାହା ମିଛକଥା ବାବୁ । ଏ ଗାଆଁ ଲୋକ କେହି ଭଲ ନୁହଁନ୍ତି । ଆମ ନାଆଁରେ ସରକାର ଆଗରେ କିଏ ମିଛ କଇଛି । ଆମ ରୂପ ଭେକ ଦେଖୁନା ବାବୁ । ଆମ ଘରେ ଟଙ୍କା ପଇସା ଥିଲେ ଆମେ କ'ଣ ଏମିତି ଚିରା ନେଙ୍କରା ଲୁଗା ପିନ୍ଧି ଥାଆନ୍ତୁ ? ଏମିତି ଅଭେକା ହେଇ ଥାଆନ୍ତୁ ?

ଇ.ଅ : ତମେ ମୋଟେ ବ୍ୟସ୍ତ ହୁଅନା, ଖାନତଲାସ କଲେ ସତ ମିଛ ବଳେ ଜଣା ପଡ଼ିଯିବ ।

ବିମଳି : କିଏ ଆମ ନାଆଁରେ ମିଛ କଇଛି ତା ନାଆଁ କୁହ ବାବୁ, ମୁଁ ତାକୁ ଏଇଠିକି ଡାକି ତମ ଆପଣଙ୍କ ଆଗେରେ ମୁକାବିଲା କରିଦେବି । ଏଡ଼େ ମିଛ କଇଲାବାଲା ? ଦେଖି ମୋ ଆଗରେ କହୁ ତ ? ତା ଶଙ୍କନଳୀରେ ନଖ ଗଲେଇ ଯଦି ଝୁଣି ନଦେଇଛି ତାହେଲେ ମୁଁ ମହନି ଜେନା ଝିଅ ନୁହଁ ।

ପୋ.ଇ : ଏ, ବେଶି ବକ୍‌ବକ୍ ନହେଇ ଚୁପ୍‌ଚାପ୍ ଠିଆ ହୋ ।

ବିମଳି : ଆମ ନାଆଁରେ କିଏ କହିଚି, ତା ନାଆଁ କୁହ ବାବୁ ।

ହରିଆ : ଏ ଗାଆଁରେ ଶାଗଖିଆକୁ ପେଜଖିଆ ଦେଖିପାରେ ନେଇଁ ହଜୁର ।

ଇ.ଅ : ତମେ ଏମିତି ବ୍ୟସ୍ତ କାଇଁକି ହଉଚ ? ଏ ଗାଆଁ ଲୋକ କେହି କିଛି କହି ନାହାଁନ୍ତି ।

ବିମଳି : ନାଇଁ ହଜୁର, କିଏ ନିଶ୍ଚେ କଇଚି ।

ହରିଆ : ନହେଲେ ଆମ ଗାଆଁରେ ଏତେ ଧନୀ ଲୋକ ଥାନ୍ତି ଥାନ୍ତି ମୋ ଘର କାଇଁକି ତଲାସ ହେବ ?

ଇ.ଅ : ଅରେ ତ କହିଲି ତମ ଗାଆଁ ଲୋକ କେହି ତମ ନାଆଁରେ କହି

ନାହାନ୍ତି । ଏ ଅର୍ଡ଼ର ଉପରୁ ଆସିଚି । ସମସ୍ତଙ୍କ ଆଗରେ ଆମେ ଖାନତଲାସ କରିବୁ । ଯଦି କିଛି ନ ବାହାରେ ଆମେ ସିଧା ଫେରିଯିବୁ ।

ପୋ.ଇ : ହଁ, ଖାନତଲାସ ବେଳେ ତୋ ପରିବାରର ସବୁଲୋକ ଏଇଠି ଉପସ୍ଥିତ ରହିବ । କେହି କୁଆଡ଼େ ଯାଇ ପାରିବ ନାହିଁ । କ'ଣ ବୁଝିଲୁ ?

ହରିଆ : ହଜୁର ।

ଇ.ଅ : ଘରୁ କିଛି ନେଇ ଯିବାର କିମ୍ବା ଲୁଚାଇ ଦେବାର ଅପଚେଷ୍ଟା କରିବ ନାହିଁ । (ହରିଆ ଝିଅ ରମା ଘର ଭିତରୁ କାନ୍ଦିଛି ।)

ହରିଆ : ହଜୁର ମୋ ଝିଅ । (ହରିଆ ଘର ଭିତରକୁ ପଶିଯାଉ ଥିଲା, ପୋଲିସ୍ ଇନିସ୍‌ପେକ୍ଟର ତାକୁ ପଛରୁ ଟାଣି ଧରିଲେ ।)

ପୋ.ଇ : ଆରେ, ଆରେ ! ତୁ ସିଆଡ଼େ କୁଆଡ଼େ ଯାଉଚୁ ? ଯା, ସେଠି ଠିଆ ହୋ ।

ହରିଆ : ବାବୁ ! ମୋ ଝିଅଟା ଘର ଭିତରେ କାନ୍ଦୁଚି । ତାକୁ ମୁଁ ପଦାକୁ ନେଇ ଆସିବି ।

ଇ.ଅ : ନା, ସେକଥା ହୋଇ ପାରିବ ନାହିଁ । ତମେ ସେଇଠି ଠିଆ ହୁଅ, ଆମେ ପୋଲିସ ପଠେଇ ତମ ଝିଅକୁ ପଦାକୁ ଆଣିବାର ବ୍ୟବସ୍ଥା କରୁଛୁ । (ରମା ପୁଣି ଘର ଭିତରେ ଥାଇ କାନ୍ଦିଛି)

ବିମଳି : ନାଇଁ ହଜୁର, କେହି ଯିବା ଦରକାର ନାଇଁ । ମୁଁ ଯାଉଚି ମୋ ଝିଅକୁ ପଦାକୁ ଘିଚି ଆସିବି । (ବିମଳି ଘର ଭିତରକୁ ପଶିଯାଉଥିଲା, ପୋଲିସ୍ ଇନିସ୍‌ପେକ୍ଟର ତାକୁ ଅଟକାଇଲେ ।)

ପୋ.ଇ : ନା, ତୁ ବି ଯାଇ ପାରିବୁ ନାହିଁ ।

ବିମଳି : ଆମ ଘର ଭିତରକୁ କାଇଁକି ଆମେ ଯାଇ ପାରିବୁ ନେଇଁ ?

ଇ.ଅ : ନା, ତମେ ଦୁହେଁ କେହି ଖାନ୍‌ତଲାସ ନସରିବା ପର୍ଯ୍ୟନ୍ତ ସେ ଘର ଭିତରକୁ ଯାଇ ପାରିବ ନେଇଁ । ତମେ ସେ ପାଖକୁ ଠିଆ ହୁଅ, ଆମେ ତମ ଝିଅକୁ ଆଣିବାର ବନ୍ଦୋବସ୍ତ କରୁଛୁ ।

ବିମଳି : ନାଇଁ ହଜୁର, ଛୁଆଟା ପୁଲିସି ଦେଖିକି ଡରିକି ଛାନିଆଁ ହେଇଯିବ । ମୁଁ ଯାଉଚି ତାକୁ ବୁଝେଇ ସୁଝେଇ ଘିଚି ଆସିବି ।

ଇ.ଅ ଆଚ୍ଛା ଅଭିଜିତ ବାବୁ ! ଆପଣ ଜଣେ କନେଷ୍ଟବଳ ଡାକନ୍ତୁ, ସିଏ

ଯାଙ୍କ ସହ ଘର ଭିତରକୁ ଯାଇ ଛୁଆକୁ ପଦାକୁ ନେଇ ଆସିବ।
ତାପରେ ଆମେ ଖାନ୍‌ତଲାସ ଆରମ୍ଭ କରିବା।

ପୋ.ଇ : ପାହାଡ଼ ସିଂ !

ପାହାଡ଼ : ସାର୍ (ପ୍ରବେଶି ସାଲ୍ୟୁଟ କଲା)

ପୋ.ଇ : ଏ ସ୍ତ୍ରୀ ଲୋକ ସାଙ୍ଗରେ ଘର ଭିତରେ ପଶି ତା ଝିଅକୁ ପଦାକୁ ନେଇ ଆ।

ହରିଆ : ମୋ ସ୍ତ୍ରୀ ଯିବ ନେଇଁ, ମୁଁ ଯିବି।

ଇ.ଥ : ଠିକ୍ ଅଛି ଯା। (ପାହାଡ଼ ସିଂ ଓ ହରିଆ ଘର ଭିତରେ ପଶି ରମାକୁ ପଦାକୁ ଆଣିଲେ। ରମା କାନ୍ଦି କାନ୍ଦି ଆସି ତା ମାଆକୁ କୁଣ୍ଢାଇ ଧରିଲା।)

ବିମଳି : ନାଇଁ ମା, କାନ୍ଦନା। ତତେ କେହି ମାରିବେ ନେଇଁ। ମୁଁ ଅଛି ତୋ ବାପା ଅଛନ୍ତି। ତୋର କେହି କିଛି କରିବେ ନେଇଁ। କାନ୍ଦନା। ମୋ ସୁନା ଝିଅ, କାନ୍ଦନା।

ରମା : (ଜୋର୍‌ରେ କାନ୍ଦି ଉଠିଲା)

ହରିଆ କାନ୍ଦନା ମାଆ, ତତେ କେହି ମାରିବେ ନେଇଁ।

ବିମଳି : (ରମାକୁ ଚୁପ୍ କରାଇବା ପାଇଁ କାନ୍ଧରେ ପକାଇଛି) ନାଇଁ ମାଆ ! କାନ୍ଦନା, କାନ୍ଦନା।

ଇ.ଥ : ଅଭିଜିତବାବୁ ! ଆମେ ଏଥର କାମ ଆରମ୍ଭ କରିବା।

ପୋ.ଇ : ଠିକ୍ ଅଛି।

ଇ.ଥ : ହରି ଓ ତାଙ୍କ ସ୍ତ୍ରୀ ପିଲାଙ୍କୁ ପୋଲିସ ଜଗି ରୁହନ୍ତୁ, ସେମାନେ ଯେମିତି କୁଆଡ଼େ ପଳେଇ ଯାଇ ପାରିବେ ନାହିଁ।

ପୋ.ଇ : ମୁଁ ସେ ବ୍ୟବସ୍ଥା କରୁଛି। ହରି ନାୟକ।

ହରିଆ : ହଜୁର !

ପୋ.ଇ : ତୁ ଆଉ ତୋ ସ୍ତ୍ରୀ ଆଉ ଛୁଆକୁ ଧରି ଏଇଠି ଠିଆ ହେଇଥିବୁ। କୁଆଡ଼େ ଯିବୁ ନେଇଁ। ତୋ ଘର ଚାରିପାଖେ ପୋଲିସ୍ ପହରା ଦେଇଛନ୍ତି, ଖସି ପଳେଇବାର ବୃଥା ଚେଷ୍ଟା କରିବୁ ନେଇଁ।

ହରିଆ : ଆଜ୍ଞା !

ପୋ.ଇ : ପାହାଡ଼ ସିଂ !

ପାହାଡ଼ : ସାର୍।

ପୋ.ଇ : ତୁ ଏଇଠି ଠିଆ ହୋଇ ଏମାନଙ୍କୁ ଜଗିଥା ।

ପାହାଡ଼ : ସାର୍ ।

ଇ.ଅ : ଆସନ୍ତୁ ଅଭିଜିତ ବାବୁ । ମୋ ସାଙ୍ଗରେ ଘର ଭିତରକୁ ଆସନ୍ତୁ ।

ପୋ.ଇ : ଚାଲନ୍ତୁ । (ଇନ୍‌କମ୍‌ଟ୍ୟାକ୍ସ ଅଫିସର ଘର ଭିତରକୁ ପଶିବା ବେଳେ ହରିଆର ନୁଆଁଣିଆ ଘରର ଦୁଆର ବନ୍ଧରେ ତାଙ୍କ ମୁଣ୍ଡଟା ବାଡ଼େଇ ହୋଇଗଲା ।)

ଇ.ଅ : ଓଃ, ମରିଗଲି । (ମୁଣ୍ଡଟାକୁ ମୁଠାଇ ଧରି ଇନ୍‌କମ୍ ଟ୍ୟାକ୍ସ ଅଫିସର ବସି ପଡ଼ିଲେ । ପୋଲିସ୍ ଅଫିସ୍‌ର ତାଙ୍କ ମୁଣ୍ଡ ଆଉଁଷି ଦେଲେ ।)

ପୋ.ଇ : କ'ଣ ହେଲା ? ମୁଣ୍ଡଟା ଫାଟି ଯାଇ ନାହିଁତ ? ଦେଖି ଦେଖି । (ମୁଣ୍ଡଟା ଦେଖିଲେ) ନା, ରକ୍ଷା ହେଇଚି, ଫାଟିନେଇଁ ।

ଇ.ଅ : ଏ ବଦମାସ ଲୋକଗୁଡ଼ା ଜାଣିଶୁଣି ଚାଳକୁ ନୁଆଁଣିଆ କରନ୍ତି ।

ପୋ.ଇ : ନୁଆଁଣିଆ ନକଲେ ଲୁଚା ଚୋରା କାରବାର କରିବାକୁ ଅସୁବିଧା ହେବ ନାହିଁ ?

ଇ.ଅ : ହଉ ଆସନ୍ତୁ, ଭିତରକୁ ଆସନ୍ତୁ ।

ପୋ.ଇ : ଚାଲନ୍ତୁ । (ପୋଲିସ୍ ଇନିସ୍‌ପେକ୍ଟର ଓ ଇନକମ୍ ଟ୍ୟାକ୍ସ ଅଫିସର ଦୁହେଁ ଘର ଭିତରକୁ ପଶିଲେ । ପାହାଡ଼ ସିଂ ଗୋଟିଏ ଛିଣ୍ଡା ଦଉଡିଆ ଖଟିଆ ଉପରେ ବସି ବିଡ଼ି ଲଗାଇଲା । ହରିଆ ଓ ବିମଳି ଘର ଦୁଆର ମୁହଁରେ ଉଙ୍କି ମାରିବା ବେଳେ ପାହାଡ଼ ସିଂର ନଜର ପଡ଼ିଯାଇଛି ।)

ପାହାଡ଼ : ଆବେ ହେ, ସେଠି କ'ଣ କରୁଚ ? ଏଠିକି ଆସ । ଏଠିକି ଆସ । ଆସ କହୁଚି । ଆବେ ଆସୁଚନା ଦେଖିବ ଏଇନେ । (ହରିଆ ଓ ବିମଳିକୁ ଠେଲି ଠେଲି ତାଙ୍କ ପୂର୍ବ ସ୍ଥାନରେ ଠିଆ କରାଇ ଦେଲା ।)

ହାଁ, ଏଇଠି ଚୁପ୍‌ଚାପ୍ ବସ । ପାଟି ଫିଟେଇବ ନେଇଁ କି କୁଆଡ଼େ ଯିବ ନେଇଁ, କିଛି ଦେଖିବ ନେଇଁ, କିଛି ଶୁଣିବ ନେଇଁ । ମୋ ନାଆଁ ପାହାଡ଼ ସିଂ । ମୋ ପାଖରେ ଚାଲବାଜି ଚଳିବ ନେଇଁ । ଜମା ଚଳିବ ନେଇଁ ।

(ଏହି ସମୟରେ ଗାଆଁର ଦୁଇ ଜଣ ଯୁବକ ମାଧିଆ ଆଉ

ରାଧୁଆ ଗୋଡ଼ ଚିପିଚିପି ଖୁବ୍ ଲୁଚିଲୁଚି ହରିଆର ଅଗଣାକୁ ଆସିଲେ । ହଠାତ୍ ସେ ଦୁହିଁଙ୍କୁ ପାହାଡ଼ ସିଂ ଦେଖି ପକାଇଛି ।)

ପାହାଡ଼ : ଆବେ, ତମେ ଦିଇଟା ସିଆଡ଼େ କୁଆଡ଼େ ଯାଉଚ ?

ମାଧିଆ : ନାଇଁ ଆଜ୍ଞା ଆମେ ଯାଉ ନଥିଲୁ ।

ପାହାଡ଼ : ଆଉ କ'ଣ କରୁଥିଲ ? ଲୁଚୁକାଳି ଖେଳୁଥିଲ ?

ରାଧୁଆ
ମାଧିଆ : } (ଦୁହେଁ ପରସ୍ପର ମୁହଁକୁ ଚାହିଁ) ହଁ, ଲୁଚକାଳି । (ଲୁଚୁକାଳି, ଲୁଚୁକାଳି କହି ରାଧୁଆ ମାଧିଆ ଦୁହେଁ ଖଟିଆ ଚାରିପାଖେ ବୁଲି ଲୁଚକାଳି ଖେଳର ଅଭିନୟ କରୁକରୁ ହରିଆର ଘର ଆଡ଼କୁ ଯିବାକୁ ବାହାରିବା ବେଳେ ପାହାଡ଼ ସିଂ ସେ ଦୁହିଁଙ୍କୁ ଅଟକାଇଛି ।

ପାହାଡ଼ : ସିଆଡ଼େ କୁଆଡ଼େ ? ସେପଟେ ଇନିସ୍‌ପେକ୍ଟର ସାହେବ ଅଛନ୍ତି ।

ରାଧୁଆ : ପୁଲିସିବାବୁ ! ଏ ...କଥା କ'ଣ କି ? ଏ ଆମ ହରିଆ ଘର କାଇଁକି ଘେରୋଉ ହେଇଚି ?

ପାହାଡ଼ : ତମେ ସେଥିରୁ କ'ଣ ପାଇବ ?

ମାଧିଆ : (ରାଧୁଆ ପ୍ରତି) ମୁଁ ତତେ ମନା କରୁଚି, ତୁ କଇଲୁ କଇବେ । ହେଲେ ପୁଲିସିବାବୁ କ'ଣ କଇଲେ ଜାଇଁଲୁତ ?

ରାଧୁଆ : ମାଧିଆ ! ତୁ ଚୁପ୍ କର ।

ପାହାଡ଼ : ତମେ ଦିଇଟା କି ପାଲା ଏଠି ନଗେଇଚ ? ଯା, ଏଠୁ, ଜଲଦି ଫୁଟ ।

ରାଧୁଆ : ମୁଁ କ'ଣ କହୁଥିଲି କି ?

ପାହାଡ଼ : କ'ଣ କହୁଥିଲୁ ?

ରାଧୁଆ : ଏଇ ଆମ ହରିଆ କ'ଣ ସେମିତି କିଛି .....

ପାହାଡ଼ : (ନୀରବ)

ମାଧିଆ : ହଁ, ସେମିତି କିଛି ଗଡ଼ମାରୁ କାମ କରିଥିବ ନା, ନହେଲେ ତୁଛାଟାରେ କ'ଣ ଏତେ ପୁଲିସି, ହାକିମ, ହୁକୁମା ଆସିଥାନ୍ତେ ?

ରାଧୁଆ : ଆବେ ମାଧିଆ ! ତୁ ଦେଖିଥିଲୁ ? ତୋର ଓପରେ ପଡ଼ି କହିବା ଅଭ୍ୟାସଟା ଭାରି ଖରାପ । ହରିଆ କ'ଣ ସେମିତିଆ ଲୋକ ?

ମାଧିଆ : ହରିଆ ସେମିତିଆ ଲୋକ କି କେମିତିଆ ଲୋକ ତୁ କେମିତି ଜାଣିଲୁ ?

ରାଧୁଆ : ହରିଆକୁ ମୁଁ ଜାଣି ନେଇଁ ?

ମାଧିଆ : ନା, ତୁ କିଛି ଜାଣି ନଉଁ ।

ରାଧୁଆ : ଜାଣିଚି ।

ମାଧିଆ : ଜାଣିନଉଁ ।

ରାଧୁଆ : ଜାଣିଚି ।

ପାହାଡ଼ : ଆବେ ଚୁପ୍ । ଚୁପ୍ । (ରାଧୁଆ ଓ ମାଧିଆ ଦୁହେଁ ଚୁପ୍ ହୋଇଗଲେ ।)

ପାହାଡ଼ : ଆବେ ମୋ ନାଆଁ ପାହାଡ଼ ସିଂ । ମୋ ପାଖରେ ଚାଲବାଜି ଚଳିବ ନେଇଁ । ଯା ଏଠୁ । ଯିବନା ଏଇନେ ଦେଖିବ ? (ଠେଙ୍ଗା ଉଠାଇଛି ପିଟିବା ପାଇଁ)

ରାଧୁଆ : ଆ, ପଳେଇ ଆରେ ମାଧିଆ ।

ମାଧିଆ : ଚାଲ, ଚାଲ ।

(ରାଧୁଆ ଓ ମାଧିଆ ଦୁହେଁ ଦ୍ରୁତଗତିରେ ଆଗକୁ ପଛକୁ ଚାହିଁ ପଳାଇଗଲେ । ହରିଆର ଘର ଭିତରୁ ବାହାରି ଆସିଲେ ପୋଲିସ୍ ଇନ୍ସପେକ୍ଟର ଓ ଇନକମ୍‌ଟ୍ୟାକ୍ସ ଅଫିସର । ସେମାନଙ୍କ ହାତରେ ଥିଲା ଗୋଟିଏ ବେତ ପେଟରା, ଦୁଇଟା ତେଲ ଚିକିଟା ମୁଚୁକା, ଗୋଟେ ଚିରା କନ୍ଥା, ମୁଠେ ଛାଞ୍ଚୁଣି, ଗୋଟେ କୁଲା, ଗୋଟେ ରବର କଣ୍ଢେଇ ଇତ୍ୟାଦି ।)

ରମା : ମୋ କଣ୍ଢେଇ, ମୋ କଣ୍ଢେଇ ।

(ପୋଲିସ ଆଣିଥିବା ଜିନିଷ ଭିତରୁ କଣ୍ଢେଇଟାକୁ ଉଠାଇ ଆଣିଲା ।)

ପାହାଡ଼ : ହେ ଛୁଆ ! ଛାଡ଼ ସେଟାକୁ ।

(ପାହାଡ଼ ସିଂ ରମା ହାତରୁ କଣ୍ଢେଇଟା ଛଡ଼ାଇଲା । ରମା ସେ କଣ୍ଢେଇଟାକୁ ତା ଜାମା ଭିତରେ ଲୁଚାଇବାକୁ ଚେଷ୍ଟା କଲା । ରମା ଶେଷରେ ପାହାଡ଼ ସିଂ ହାତକୁ କାମୁଡ଼ି ଦେଇ କଣ୍ଢେଇ ଧରି ଚାଲି ଆସିଲା ।)

ପାହାଡ଼ : ବଦମାସ ପିଲା, ରହ ତତେ ଦଉଚି ଦି' ପାହାର ।

ହରିଆ : ରୁହ ବାବୁ ! ମୁଁ ତାଠୁ ନେଇ ଆଉଚି ।

ବିମଳି : ଦେଇ ଦେ ମାଆ, ବାବୁ ମାରିବେ ।

ରମା : ନାହିଁ, ମୁଁ ଦେବି ନାହିଁ । ଏଟାତ ମୋର, ସିଏ କାହିଁକି ନେଇଯିବେ ।

ହରିଆ : (ରମା ହାତରୁ କଣ୍ଢେଇଟାକୁ ଛଡ଼ାଇଲା) ଛାଡ଼ ସେଟାକୁ ଛାଡ଼ । ଛାଡ଼୍ କହୁଚି । (ରମାକୁ ଚାପୁଡ଼ା ମାରିଲା ଓ କଣ୍ଢେଇଟାକୁ ତା'ଠୁ ଛଡ଼ାଇ ଆଣି ପାହାଡ଼ ସିଂ ଆଡ଼କୁ ଫୋପାଡ଼ି ଦେଲା ।) ନିଅ ତମ କଣ୍ଢେଇ । (ରମା ମାଡ଼ ଖାଇ କାନ୍ଦିଲା । ବିମଳି ତାକୁ କୋଳରେ ପୂରାଇ ବହଲାଇଲା । ରମା ସେମିତି କାନ୍ଦୁଥାଏ ।)

ଇ.ଅ : ଅଭିଜିତବାବୁ । ଏ ଗାଆଁ ଭିତରୁ ଜଣେ ମୁଖିଆ ଲୋକ ଡାକନ୍ତୁ । ତାଙ୍କ ସାମନାରେ ଆମେ ଏ ପେଟରା ଖୋଲିବା ।

ପୋ.ଇ : (ଟିକେ ଆଗେଇ ଯାଇ ଗାଆଁ ଲୋକରୁ ଜଣକୁ ଡାକିଲେ) ହେ ବାବୁ ! ହଁ ଆପଣ ଆସନ୍ତୁ । (ଜଣେ ଲୋକ ମଞ୍ଚ ଉପରକୁ ଆସିଲେ ।)

ସୁମନ୍ତ : ମତେ ଡାକିଲେ ଆଜ୍ଞା ?

ପୋ.ଇ : ହଁ, ସେଇଠି ଇନ୍‌କମ୍ ଟ୍ୟାକ୍ସ ଅଫିସର ଅଛନ୍ତି, ତାଙ୍କ ପାଖକୁ ଯାଆନ୍ତୁ । (ଇନ୍‌କମ୍ ଟ୍ୟାକ୍ସ ଅଫିସର ପିଣ୍ଡାରେ ବସିଥିଲେ । ତାଙ୍କ ପାଖକୁ ଗଲେ ସୁମନ୍ତ ।)

ଇ.ଅ : ଆପଣଙ୍କ ଘର ଏଇ ମଦନପୁର ଗାଆଁରେ ?

ସୁମନ୍ତ : ଆଜ୍ଞା ।

ଇ.ଅ : ଆପଣଙ୍କ ନାଆଁ ?

ସୁମନ୍ତ : ସୁମନ୍ତ ଧଳ ।

ଇ.ଅ : ଆଚ୍ଛା ସୁମନ୍ତବାବୁ ! ଆପଣ ଆମକୁ ଟିକେ ସାହାଯ୍ୟ କରିବେ ?

ସୁମନ୍ତ : ମୁଁ କି ସାହାଯ୍ୟ କରିବି ?

ଇ.ଅ : ଆପଣ କେବଳ ଏଇଠି ଠିଆ ହେବେ । ଆମେ ଆପଣଙ୍କ ସାମନାରେ ହରିଆର ସବୁ ଜିନିଷ ତଲାସ କରିବୁ ।

ସୁମନ୍ତ : ସାର୍ ।

ଇ.ଅ : ହରି ନାୟକ, ତମେ ବି ଏଠିକି ଆସ । ଆରେ ଆସୁନ ଆସ । (ହରିଆ ଡରିଡରି ତାଙ୍କ ପାଖକୁ ଗଲା ।) ହଁ, ତମେ ଏଇଠି ଠିଆ ହୁଅ ।

ପୋ.ଇ : ସମରବାବୁ ! ଏଥର ପେଟରାଟା ଖୋଲିବା ?

ହରିଆ : ଏତେ ଲୋକଙ୍କ ଆଗରେ ପେଟରାଟା କାହିଁକି ଖୋଲିବେ ହଜୁର ? ତା ଭିତରେ କିଛି ଭଲ ଜିନିଷ ନାହିଁ । ଖାଲି ଥାକି ମାକିକା ଜିନିଷ ପଶିଚି ।

ଇ.ଅ : ତମେ ଚୁପ୍ ହୋଇ ଠିଆ ହୁଅ । ତମକୁ ଯଦି କିଛି ପଚାରିବୁ କହିବ । ଅଭିଜିତବାବୁ ! ଏଥର ପେଟରା ଖୋଲନ୍ତୁ ।

ପୋ.ଇ : (ପେଟରାର ଢାଙ୍କୁଣି ଖୋଲିଲେ । ପ୍ରଥମେ ଗୋଟେ ଚିରା କାମିଜି କାଢ଼ିଲେ । ସମସ୍ତଙ୍କ ଆଗରେ ସେ କାମିଜିଟାକୁ ଟେକି ଧରିଲେ)

ଇ.ଅ : ସେଟାକୁ ଛାଡ଼ନ୍ତୁ, ତା ତଳେ କ'ଣ ଅଛି ? ଯାହା ଅଛି, ଗୋଟି ଗୋଟିକି ବାହାର କରନ୍ତୁ ।

ପୋ.ଇ : ଏଇଟା ଦେଖିଲେ କ'ଣ । (କାଠ ପାନିଆଟେ ଇ.ଅଙ୍କ ହାତକୁ ବଢ଼ାଇ ଦେଲେ ।)

ଇ.ଅ : (କାଠ ପାନିଆଟାକୁ ଏପଟ ସେପଟ କରି ଦେଖିଲେ ।)

ହରିଆ : ସେଟା ଗୋଟେ କାଠ ପାନିଆ ।

ଇ.ଅ : ମୁଁ ଭାବୁଥିଲି ହାତୀ ଦାନ୍ତର ପାନିଆ ହବ କି କ'ଣ ?

ସୁମନ୍ତ : ନାଇଁ ସାର୍, ସେଟା କାଠ ପାନିଆଟେ ।

ପୋ.ଇ : ତମେ ଚୁପ୍ କର ।

ଇ.ଅ : ଏଟାକୁ Expertଙ୍କ ଦ୍ୱାରା ପରୀକ୍ଷା କଲେ ଠିକ୍ କଥା ଜଣା ଯିବ । ହଉ, ଆଉ କ'ଣ ଅଛି ବାହାର କରନ୍ତୁ ।

ପୋ.ଇ : ଏଇଟା ଗୋଟେ ........

ହରିଆ : କାଠ ଫରୁଆ ଆଜ୍ଞା ।

ଇ.ଅ : ତା ଭିତରେ ନିଶ୍ଚୟ କିଛି ମୂଲ୍ୟବାନ ମାଲ୍‌ଥିବ ।

ହରିଆ : ନାଇଁ ହଜୁର, ତା ଭିତରେ କିଛି ନାହିଁ ।

ଇ.ଅ ତମେ ଚୁପଚାପ୍ ଠିଆ ହୁଅ । ତୁମକଥାକୁ ବିଶ୍ୱାସ କରାଯାଉଥିଲେ ଏ ଖାନ୍‌ତଲାସ ହୁଅନ୍ତା କାହିଁକି ? ହଁ, ଅଭିଜିତବାବୁ ! ଫରୁଆଟା ଖୋଲନ୍ତୁ ।

ପୋ.ଇ (ଖୋଲିବାକୁ ଚେଷ୍ଟାକଲେ, କିନ୍ତୁ ଖୋଲି ପାରିଲେ ନାହିଁ ।) ନା, ଏଟା ଫିଟୁ ନାହିଁ ।

ଇ.ଅ : ଦେଲେ, ମୋ ହାତକୁ ଦିଅନ୍ତୁ । (ପୋ.ଇଙ୍କ ହାତରୁ ଫରୁଆଟି ନେଇ ଇ.ଅ ଖୋଲିବାକୁ ଚେଷ୍ଟା କରି ବିଫଳ ହେଲେ ।)

ହରିଆ : ବହୁତ ଦିନ ହେଲା ଫରୁଆଟା ପେଟରା ଭିତରେ ପଡ଼ିପଡ଼ି ଛାବ ପଡ଼ି ଯାଇଚି । ମତେ ଦିଅନ୍ତୁ, ମୁଁ ଖୋଲି ଦେବି ।

ଇ.ଅ : ଥରେ କହିଲି, ତମେ ଚୁପ୍‌ଚାପ୍ ଠିଆ ହୁଅ ବୋଲି । ମଝିରେ ମଝିରେ କାଇଁକି ପାଟି କରୁଚ ? ଅଭିଜିତ ବାବୁ, ନିଅନ୍ତୁ । ଫରୁଆଟା ଭାଙ୍ଗି ଦିଅନ୍ତୁ ।

ହରିଆ : ନାଇଁ, ନାଇଁ ଭାଙ୍ଗନେଇଁ ବାବୁ ।

ପୋ.ଇ : ଆବେ ହେ, ତତେ ପରା ହଜାରଥର କୁହାଗଲାଣି ଚୁପ୍‌ଚାପ୍ ଠିଆ ହବାକୁ । ବକ୍‌ବକ୍ କାଇଁକି ହଉଚୁ । (ହରିଆକୁ ପେଲିଦେଲେ । ସିଏ ତଳେ ପଡ଼ିଗଲା । ବିମଳି କାନ୍ଦିକାନ୍ଦି ତାକୁ ତଳୁ ଉଠାଇଲା ।)

ଇ.ଅ : ଆଉ ଚାହୁଁଚନ୍ତି କ'ଣ ? ବାଡ଼ିରେ ପିଟିକି ଫରୁଆଟା ଭାଙ୍ଗିଦିଅନ୍ତୁ ।

ପୋ.ଇ ଠିକ୍ ଅଛି ଭାଙ୍ଗୁଚି । (ଗୋଟେ ବାଡ଼ିରେ ପିଟିପିଟି ଫରୁଆଟା ଭାଙ୍ଗିଦେଲେ । ତା ଭିତରୁ ଧଳାଧଳା କାଚ ମାଳି ବାହାରିଲା ।)

ଇ.ଅ : (ତଳୁ ଗୋଟେ କାଚମାଳି ଗୋଟାଇ)ହୀରା ! ଆରେ ଇଏତ ଖୁବ୍ ମୂଲ୍ୟବାନ ହୀରା !

ପୋ.ଇ : (ତଳୁ ଗୋଟେ କାଚମାଳି ଗୋଟାଇ ତାକୁ ପରୀକ୍ଷା କରି) ହୀରା ! ହଁ, ସମରବାବୁ ଏଇଟା ଅସିଲି ହୀରା ।

ଇ.ଅ : ଖୁବ୍ ଦାମି ହୀରା । ଖୁବ୍ Rare Varietyର ହୀରା । ମୁଁ କହୁନଥିଲି ଯା ଘରେ ବହୁତ ମାଲ୍ ଅଛି ?

ପୋ.ଇ : ହରିଆ ! ଆଡକୁ ଆସିଲୁ ।

ହରିଆ : (ଡରିଡରି ଆସିଲା) ହଜୁର ।

ପୋ.ଇ : ଏମିତିଆ ହୀରା ତୋ ପାଖରେ କେତେ ଅଛି ?

ହରିଆ : ହୀରା କ'ଣ ବାବୁ ?

ଇ.ଅ : ଏଇଟା ହୀରା, ଦେଖ । ନିଜେ ରଖୁଚ ଜାଣିନା ?

ହରିଆ : ସେଗୁଡ଼ା ହୀରା ନୁହଁ କାଚ ।

ଇ.ଅ : କାଚ ?

ପୋ.ଇ : ତୋର ସେ ଚାଲାକି ରଖି ଦେଇଥା । ଆମେ କ'ଣ ହୀରା ଆଉ କାଚ ଭିତରେ ପ୍ରଭେଦ ଜାଣି ନଉଁ ? ବୁଝିଲେ ସମରବାବୁ ! ମୁଁ

ପ୍ରଥମେ ଭାବିଥିଲି ଏ ହରି ନାୟକ ଖୁବ୍ ସାଦାସିଧା ନିରୀହ ଲୋକ । କିନ୍ତୁ ଏବେ ଜଣା ପଡୁଛି ଏ ଗୋଟେ ଏକ ନମ୍ବର ସଇତାନ ।

ବିମଳି : ନାଇଁ ବାବୁ, ଏଗୁଡ଼ା କାଚମାଳି ।

ହରିଆ : ମୁଁ ରମାବୋଉ ପେଇଁ ହାଟରୁ କାଚ ମାଳି କେରେ ଆଣିଥିଲି । ସିଏ ମୋଟେ ତିନି, ଚାରି ମାସେ ପିନ୍ଧି ନେଇଁ ଛିଣ୍ଡିଗଲା ।

ବିମଳି : ଛିଣ୍ଡା ମାଳିତକ ମୁଁ କାଠ ଫରୁଆରେ ପୂରେଇ ପେଟରାରେ ଥୋଇ ଦେଇଥିଲି ।

ପୋ.ଇ : ବାଃ, ସ୍ୱାମୀ ସ୍ତ୍ରୀ ଦୁହେଁ ମିଶି ବଢ଼ିଆ ଗପଟେ ଆମକୁ ଶୁଣେଇଲ ।

ହରିଆ : ସତ କଥା ବାବୁ ! ଏଗୁଡ଼ା କାଚ ମାଳି ।

ପୋ.ଇ : କିରେ କାହା ଆଗରେ ତୁ ଏ ଫିସାଦି କାଢୁଚୁ ? ମତେ ଚିହ୍ନିନଉଁ ?

ଇ.ଅ : ଅଭିଜିତାବାବୁ ! ଏ ଗାଆଁରୁ କି ଏ ପାଖଆଖ ଗାଆଁରୁ ଜଣେ ବଣିଆ ଡକେଇ ଆଣନ୍ତୁ, ସିଏ ଚିହ୍ନିବ ଏଟା ହୀରା ନା କାଚ ।

ପୋ.ଇ : ଠିକ୍ କଥା । କର୍ତ୍ତାର ସିଂ !

କର୍ତ୍ତାର : (ପ୍ରବେଶି) ସାର୍ !

ପୋ.ଇ : ଏ ଗାଆଁ ଭିତରକୁ ଯାଇ ଜଣେ ବଣିଆ ଡାକି ଆଣ୍ ।

କର୍ତ୍ତାର : ସାର୍ । (ପ୍ରସ୍ଥାନ)

ପୋ.ଇ : ତମ ନାଆଁ କ'ଣଟି ?

ସୁମନ୍ତ : ସୁମନ୍ତ ଧଳ ।

ପୋ.ଇ : ତମେ କଣ କର ?

ସୁମନ୍ତ : କିଛି ନାହିଁ ସାର୍ । ଏଇ ..... ଏମିତି ......

ଇ.ଅ : କିଛି ଗୋଟେ କରୁଥିବ ନା ?

ପୋ.ଇ : କ'ଣ ରାଜନୀତି କରୁଚ ?

ସୁମନ୍ତ : ନାଇଁ ସାର୍, ସିଏ କିଛି ନୁହଁ ।

ଇ.ଅ : କିଛି ନୁହଁ କ'ଣ ? କ'ଣ ସରପଞ୍ଚ ଅଛ ?

ସୁମନ୍ତ : ନାଇଁ ସାର୍ । ଓ୍ୱାର୍ଡ଼ମେମ୍ବର ଅଛି ।

ପୋ.ଇ : ଏଥର ଓ୍ୱାର୍ଡ଼ମେମ୍ବର ଅଛ, ଆରଥରକୁ ସରପଞ୍ଚ ହବ ।

ସୁମନ୍ତ : ଆମ ଗାଆଁ ଖୁବ୍ ଛୋଟ ସାର୍ । ଏ ଗାଆଁ ଲୋକ କେମିତି ସରପଞ୍ଚ ହେବ ? ଆମ ଏଇ ପାଖ ଗାଆଁ ପଞ୍ଚପଡ଼ା ଖୁବ୍ ବଡ଼ ଗାଆଁ । ସେଇ ଗାଆଁର ଅଲେଖ ଦାସ ଆମ ସରପଞ୍ଚ ।
(ଏଇ ସମୟରେ କର୍ତ୍ତାର ସିଂ ବଣିଆକୁ ଧରି ପ୍ରବେଶ କଲା)

କର୍ତ୍ତାର : ବଣିଆ ଆସିଗଲା ସାର୍ ।

ଇ.ଥ : (ବଣିଆ ପ୍ରତି) ଆଚ୍ଛା ତମ ନାଆଁ କ'ଣ ?

ଛଗନ : କିସ ବୋଇଲେ ହଜୁର ?

ଇ.ଥ : ତମ ନାଆଁ କ'ଣ ? (ବଡ଼ ପାଟିରେ ତା କାନ ପାଖରେ କହିଲେ)

ଛଗନ : ମୋ ନାଆଁ ପଚାରିବାର କି ଏକା ?

ପୋ.ଇ : ହଁ, ହଁ ତମ ନାଆଁ କଣ କୁହ ।

ଛଗନ : ଏ ହରି ନାୟକ ଘର ଖାନ୍‌ତଲାସ୍ରୁ ମାମଲାରେ ମୋ ନାଆଁର କିସ ଲେଖା ହଜୁର ?

ପୋ.ଇ : ଏତେ ଛଟକ ଦେଖଉଚୁ କ'ଣବେ ? ତୋ ନାଆଁ ଶୀଘ୍ର କହିବୁ ନା ଦେଖିବୁ ଏଇନେ ?

ଛଗନ : ବୋଲୁଚି ହଜୁର, ବୋଲୁଚି । ଏତେ ତଦ୍ଦରା ହେବାର କିସ ଆଜ୍ଞା ?

ଇ.ଥ : ତମ ନାଆଁଟା ଶୀଘ୍ର କୁହ, ଆମ କାମ ଡେ଼ରି ହେଉଛି ।

ଛଗନ : ମୋ ନାଆଁ, ଛଗନ ସୁନ୍ଦର ଏକା । ଛଗନ ସୁନ୍ଦର ।

ଇ.ଥ : ଆଚ୍ଛା ଛଗନ ସୁନ୍ଦର, ଦେଖିଲ ଏଇଟା ଖାଣ୍ଟି ହୀରା ନା ?

ଛଗନ : (କାଚମାଳିରୁ ଗୋଟିଏ ନେଇ) ଆଁ, କେଡ଼େ ପାଇଟି ହେଲା ? ଆମ ଏଇ ହରିନାୟକ ଘରେ ହୀରା ଥିବାର କି ? କେଡ଼େ ପାଇଟି ଏକା ?

ପୋ.ଇ : କ'ଣ ଛଗନ ସୁନ୍ଦର, ସେଇଟା ହୀରା ତ ?

ଛଗନ : (ଏପଟ ସେପଟ କରି ଦେଖି) କିସ ବୋଇଲେ ହଜୁର ? ହୀରା ?

ଇ.ଥ : ହଁ, ହୀରା ।

ଛଗନ : (ମୁଣ୍ଡ ହଲାଇ) ଉହୁଁ, ଆମ ଗାଆଁର ଏ ହରିନାୟକ ଆଉ ହୀରା ? ଏଇଟା ଗୋଟେ ଫସନ୍ଦ କଥାକି ଏକା ?

ପୋ.ଇ : ସେ ବକ୍‌ବାଜି ବନ୍ଦ କର । ଭଲ ଭାବେ ପରୀକ୍ଷା କରି କୁହ, ଏଇଟା ହୀରା ନା ଆଉ କ'ଣ ?

ଛଗନ : କିସ ବୋଇଲେ ? ଭଲ କି ପରୀକ୍ଷା କରିବାର ? ସମାନ ପରୀକ୍ଷା କରୁଚି ହଜୁର । (ଛଗନ ତା ମୁଣ୍ଡିରୁ ଗୋଟିଏ ମାଗ୍ନିଫାଇଙ୍ଗ୍ ଗ୍ଲାସ ବାହାର କରି ପରୀକ୍ଷା କରିଛି ।)

ଇ.ଅ : କ'ଣ ଦେଖିଲ ?

ଛଗନ : ସମାନ ଭଲକି ଦେଖୁଥିବାର ଏକା । ହେଲେ ଏଇଟା .....

ହରିଆ : କାଚ । କାଚମାଳି ।

ପୋ.ଇ : ଚୁପ୍ । ତତେ କିଏ କହିଲା ଏସବୁ କହିବାକୁ ?

ଇ.ଅ : ହଁ, ଛଗନ ସୁନ୍ଦର ଶୀଘ୍ର କୁହ । କ'ଣ ଦେଖିଲ ?

ଛଗନ : ହଁ, ସାଆରେ ।

ଇ.ଅ : କ'ଣ ହଁ ସାର୍ । ସେଇଟା ଖାଣ୍ଟି ହୀରା ?

ଛଗନ : ନାଇଁ ସାର୍ ।

ଇ.ଅ : ଆଚ୍ଛା ଲୋକ ତମେ । ହଁ, ସାର୍ ପୁଣି ନାଇଁସାର୍ ।

ଛଗନ : ହଁ, ସାର୍ ।

ଇ.ଅ : ଅଭିଜିତ ବାବୁ, ଏ ଲୋକ କଥା ଆପଣ ବୁଝନ୍ତୁ । ଏଲୋକ କ'ଣ ଖାଲି ହଁ ସାର୍, ନାହିଁ ସାର୍ ହେଉଛି ?

ପୋ.ଇ : କିବେ, ତତେ ଥଣ୍ଡା ଲାଗିଛି ?

ଛଗନ : ନାଇଁ ସାର୍ ।

ପୋ.ଇ : ଏମିତି ନାଇଁସାର୍, ହଁ ସାର୍ କ'ଣ ହଉଚୁ ? ଯାହା କହିବା କଥା ଭୟ ନକରି ସଫା ସଫା କହ ।

ଛଗନ : କଥାଟା ଫିଟେଇକି ବୋଲିବାକୁ ମତେ ସରମ ନାଗୁଚି ଏକା ।

ପୋ.ଇ : ସରମ ନାଗୁଚି କ'ଣବେ ? ତୁ କ'ଣ ମାଇକିନା ହେଇଚୁ ? କହ, କ'ଣ କହିବାର ଅଛି ।

ଛଗନ : କିସ ବୋଲିବାର କି ଆମର ଏଇଟା ଘୋଟେ ନିପଟୁ ମଫସଲ ଗାଆଁ ଏକା । ଏଠିକା ଲୋକେ ବିବାକ ଗରିବ । ଏମାନେ ସୁନା, ରୂପା ଛଡ଼ା ଆଉ ଅଲଗା ଦରବରେ ଗହଣା ଗାଣ୍ଠି ଗଢ଼ଉ ନଥିବାର ଆଣ୍ଟା । ମୋଟରୁ ନ ଦେଖିଥିବା ଦରବଟାକୁ ଚିହ୍ନିବି କିସ କରି ?

ଇ.ଅ : ଏଇ କଥାଟା ଆରମ୍ଭରୁ କହି ଦେଇଥିଲେ କଥା ସରି ଯାଇଥାଆନ୍ତା । ଏ ହଁ ସାର୍, ନାଇଁ ସାର୍ ପାଲା ଏତେ ସମୟ ଧରି କାହିଁକି କରୁଥିଲ ?

ଆନଂଦ ଚଂଦ୍ର ପହି

ପୋ.ଇ : ହଉ ତମେ ଯା, ଆମେ ସହରୀ ବଣିଆକୁ ଦେଖେଇବୁ । କ'ଣ କହୁଛନ୍ତି ସମରବାବୁ ? ଏ ଲୋକ ଯାଉ ?

ଇ.ଅ : ଠିକ୍ ଅଛି ତମେ ଯାଅ । (ଛଗନ ନମସ୍କାର କରି ଫେରିଗଲା ।)

ଇ.ଅ : ଅଭିଜିତବାବୁ, ଆଉ ସବୁ କ'ଣ ଅଛି ଦେଖନ୍ତୁ ।

ପୋ.ଇ : ଦେଖୁଛି । (ପେଟରାରୁ କିଛି ଛୋଟ ପିଲାଙ୍କ ଚିରା ଜାମା, ପ୍ୟାଣ୍ଟ ବାହାର କରି ତଳେ ଥୋଇଲେ ।)

ଇ.ଅ : ଆଉ କ'ଣ ଅଛି ?

ପୋ.ଇ : ଏଇଟା ବୋଧହୁଏ ଗୋଟେ କୋଥଳି ।

ଇ.ଅ : ଖୋଲନ୍ତୁ, ତା ଭିତରେ କଣ ଅଛି ?

ପୋ.ଇ : ୟା ଭିତରେ କିଛି ନିର୍ମାଲ୍ୟ ଆଉ ପାଟଫୁଲି ।

ଇ.ଅ : ତାକୁ ଥୁଅନ୍ତୁ । ଦେଖନ୍ତୁ ପେଟରାରେ ଆଉ କ'ଣ ସବୁ ଅଛି ।

ପୋ.ଇ : (ପେଟରା ଭିତରେ ହାତ ପୂରାଇ ଗୋଟେ ତାଳପତ୍ର ଆଣିଲେ) ଏଇଟା କ'ଣ ଦେଖିଲେ ?

ଇ.ଅ : (ନିଜ ହାତକୁ ତାଳପତ୍ରଟା ନେଇ) ହଁ, ଏଇଟା ବୋଧହୁଏ ଗୋଟେ ଗୁପ୍ତ ସ୍ଥାନର ନକ୍ସା । ଦେଖିଲେ ଏଇ ନକ୍ସାଟା କ'ଣ ?

ପୋ.ଇ : କାହିଁ କିଛି ନକ୍ସା ଥିଲା ପରି ତ ଦିଶୁ ନାହିଁ । କିଛି ଗୋଟେ କୁଣ୍ଡଳୀ ଅଙ୍କା ଯାଇଛି ।

ଇ.ଅ : ତା ତଳକୁ କ'ଣ ଲେଖାଯାଇଛି ପଢ଼ନ୍ତୁ ।

ପୋ.ଇ : (ପଢ଼ିଲେ) ଶ୍ରୀ ଶ୍ରୀ ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧୀବୀରବର ଅତୁଳ ବଳ ପରାକ୍ରମ ସଂଗ୍ରାମେ ସହସ୍ରବାହୁ କ୍ଷତ୍ରିୟ କୁଳଧୂମକେତୁ ପ୍ରତାପୀ ଶ୍ରୀ ଶ୍ରୀ ମହାରାଜ ଦିବ୍ୟସିଂହ ଦେବଙ୍କ ବିଜୟ ଶୁଭ ରାଜ୍ୟ ବର୍ଦ୍ଧନେ ଚତୁର୍ଥାଙ୍କେ ସ୍ମ ୧୩୪୨ ସାଲ, ବୈଶାଖ ମାସି ଅଶୀତ ପକ୍ଷେ ....

ଇ.ଅ : ଏମିତି କ'ଣ ପଢ଼ି ଚାଲିଥିବେ ? ଦେଖନ୍ତୁ କୋଉଠି କ'ଣ ସୂତ୍ର ଥିବ କି ନକ୍ସାଥିବ ।

ହରିଆ : ସେଇଟା ମୋ ଜାତକ ଆଜ୍ଞା ।

ଇ.ଅ : ତମ ଜାତକ ?

ହରିଆ : ହଁ, ଆଜ୍ଞା ।

ଇ.ଅ : ତମେ କହୁନା ? ଆମେ ମିଛରେ ପଢ଼ି ଚାଲିଚୁ । ସେଟାକୁ ଛାଡନ୍ତୁ ଅଭିଜିତବାବୁ । ଆଉ କ'ଣ ଅଛି ଦେଖନ୍ତୁ ।

ପୋ.ଇ : ନା, ଆଉ ଯା ଭିତରେ କିଛି ନାହିଁ । (ପେଟରାଟା ଓଲଟାଇ ଝାଡ଼ି ଦେଲେ ।)

ଇ.ଅ : ଏଥର ସେ ମୁଟୁକା ଦିଇଟା ଖୋଲନ୍ତୁ । (ଏତିକି ବେଳେ ହରିଆ ମୁଟୁକା ଦିଇଟାକୁ କୁଣ୍ଢେଇ ଧରିଲା)

ହରିଆ ନାଇଁ ବାବୁ, ଏ ଦିଇଟା ଭିତରେ କିଛି ନାହିଁ । ଏଗୁଡ଼ା କାଇଁକି ଖୋଲିବେ ବାବୁ ? ଆମେ ହଇରାଣ ହବୁ ।

ପୋ.ଇ (ମୁଟୁକା ଦୁଇଟା ହରିଆଠାରୁ ଛଡ଼ାଇ ଆଣି) ଛାଡ୍, ଛାଡୁଚୁନା । ତୁ ଏଠୁ ଗଲୁ, ଯା, ତୁ ସେ କଡ଼କୁ ଠିଆ ହୋ ।

ସୁମନ୍ତ : ହରିଆ ! ସାର୍‌ଙ୍କ କଥା ମାନ । ଯା, ସେକଡ଼କୁ ଠିଆ ହୋ ।

ହରିଆ : ତା ଭିତରେ ଖାଲି ଚିରା ନେଙ୍କରା କନା ପଇଚି, ତାକୁ ଚିରି ଦେଲେ ଆମେ ଶୋଇବୁ କେମିତି ?

ପୋ.ଇ : ଆବେ ହେ, ଚୁପ୍‌ଚାପ୍ ଯାଇ ସେଠି ଠିଆ ହୋ । ନହେଲେ ବାନ୍ଧିକି ମାମୁଘରକୁ ପଠେଇ ଦେବି ।

ହରିଆ : ବାବୁ ! ଆମ ଉପରେ ଦୟାକର ।

ପୋ.ଇ : ପାହାଡ଼ ସିଂ !

ପାହାଡ଼ : ସାର୍ ।

ପୋ.ଇ : ନେ, ଏଟାକୁ ଏଠୁ ନେଇକି ସେକଡ଼େ ଠିଆକର ।

ପାହାଡ଼ : (ହରିଆକୁ ଧକ୍କା ମାରିମାରି ନେଇଗଲା ଗୋଟେ କଡ଼କୁ) ଚାଲ୍ ସେକଡ଼କୁ । ଚାଲ୍ । ଚାଲୁଚୁନା ଦେବି ଦି ପାହାରେ । (ପୋଲିସ ଇନିସ୍‌ପେକ୍ଟର ମୁଟୁକା ଚିରିବାକୁ ଆରମ୍ଭ କରୁଥିଲେ, ବିମଳି ଧାଇଁ ଆସି ମୁଟୁକା ଦିଇଟା ନେଇ ଯାଇଛି ।)

ବିମଳି : ନାଇଁବାବୁ, ସେ ଦିଇଟା ଚିରନା । ତା ଭିତରେ କିଛି ନାହିଁ ।

ପୋ.ଇ : (ବିମଳି ହାତରୁ ମୁଟୁକା ଦୁଇଟା ଛଡ଼ାଇ ଆଣିଲେ) ଯା, ସେଠି ତୋ ମରଦ ପାଖରେ ଚୁପ୍‌ଚାପ୍ ଠିଆ ହୋ । ଆମ କାମରେ ବାଧା ଦେଲେ ଆମେ ଆଇନ୍‌ର ଆଶ୍ରୟ ନେବାକୁ ବାଧ୍ୟ ହେବୁ । ତୁ ଏଠୁ ଯା । (ବିମଳି ଅନିଚ୍ଛାସତ୍ତ୍ୱେ ଆଡ ହୋଇଯାଇଛି)

ଇ.ଅ : ମୋର ଅନୁମାନ ଯା ଭିତରେ ନିଶ୍ଚୟ କିଛି ମୂଲ୍ୟବାନ ମାଲ୍

ଅଛି । ଶୀଘ୍ର ଚିରନ୍ତୁ ଅଭିଜିତ୍‌ବାବୁ । (ପୋଲିସ୍ ଇନିସ୍‌ପେକ୍ଟର ମୁଣ୍ଡକା କୁଇଟା ଚିରିଲେ । ତା' ଭିତରେ କେବଳ ଛିଣ୍ଡା କନା । ସେ କନାକୁ ଖେଳାଇ ବିଞ୍ଚି ଦେଲେ ମଣ୍ଡସାରା ।)

ପୋ.ଇ : ନାଇଁ ସମରବାବୁ । ୟା ଭିତରେ କିଛି ନାହିଁ । କେବଳ ଚିରା, ମଇଳା କନା । ଏ ହରିନାୟକ ମହାଚାଲାକ । ଆଗରୁ କେମିତି ଖାନ୍‌ତଲାସର ଖବର ପାଇକି ସବୁ ଗାଏବ କରି ଦେଇଛି । ତାର କୋଉ ବ୍ୟାଙ୍କରେ ଆକାଉଣ୍ଟ୍ ଅଛି ତାକୁ ପଚାରନ୍ତୁ । ସେଟାକୁ ସିଲ୍ କରିବାକୁ ପଡ଼ିବ ।

ଇ.ଅ : ଆଜ୍ଞା, ହରି ଏଠିକି ଆସିଲ ।

ହରିଆ : କ'ଣ ଆଜ୍ଞା ?

ଇ.ଅ : ତମର କେଉଁ ବ୍ୟାଙ୍କରେ ଆକାଉଣ୍ଟ କି ଲକର ଅଛି ?

ହରିଆ : ସେ ସବୁ କ'ଣ ?

ସୁମନ୍ତ : ସାର୍ ପଚାରୁଚନ୍ତି ତୁ କୋଉ ବ୍ୟାଙ୍କରେ ଟଙ୍କା କି ସୁନା ରଖିଛୁ ?

ହରିଆ : ତମେତ ଜାଣିଚ, ମୁଁ ଭାରି ଗରିବ ଲୋକ । ମୁଁ ଆଉ ମୋ ପିଲା ଛୁଆ ଅଧେ ଦିନ ଉପାସ ରହୁଚୁ । ଟଙ୍କା ସୁନା ପାଇବୁ କୋଉଠୁ ?

ଇ.ଅ : ହଉ, ତମେ ଯା । ତମ ଛୁଆପିଲାଙ୍କ ପାଖରେ ଠିଆ ହୁଅ ।

ହରିଆ : ହଜୁର । (ପିଲାଙ୍କ ପାଖକୁ ଚାଲିଗଲା)

ପୋ.ଇ : ଏବେ ଆଉ କ'ଣ କରିବା ସମରବାବୁ ?

ଇ.ଅ : ମୋର ସନ୍ଦେହ ହେଉଛି, ଏ ଲୋକ ତା ଘର ଭିତରେ ଗାତ ଖୋଳି ସବୁ ଜିନିଷ ପୋତି ପକାଇଛି । ଆମେ ଉପରେ ଉପରେ ଖୋଜିଲେ କ'ଣ ପାଇବା ?

ପୋ.ଇ : ହଁ, ମୋର ମଧ୍ୟ ସେଇଆ ସନ୍ଦେହ ହେଉଛି ।

ଇ.ଅ : ତା'ହେଲେ ଆମକୁ ତିନିଚାରି ଜଣ ମୂଲିଆ ଯୋଗାଡ଼ କରିବାକୁ ପଡ଼ିବ ଯେଉଁମାନେ ହରିନାୟକର ଘର ଭିତରଟାକୁ ଖୋଳିବେ ।

ପୋ.ଇ : ଆଚ୍ଛା ! ସୁମନ୍ତବାବୁ ।

ସୁମନ୍ତ : ସାର୍ !

ପୋ.ଇ : ତମେ ଚାରିଜଣ ମାଟି ଖୋଳିବା ଲୋକ ଯୋଗାଡ଼ କରିପାରିବ ?

ଇ.ଅ : ଆମେ ସେମାନଙ୍କ ମଜୁରି ଦେବୁ ।

ସୁମନ୍ତ : ପାରିବି ସାର୍ । ଆପଣ କହିଲେ ଚାରିଜଣ କ'ଣ ଆଠଜଣ ବି ଯୋଗାଡ଼ କରିଦେବି ।

ଇ.ଅ : ଏତେ ଲୋକ ଦରକାର ନାହିଁ । ଦୁଇଜଣ ଲୋକ ହେଲେ ଚଳିବ । ଦୁଇଟା ଶାବଳ, କୋଡ଼ି, ଝୁଡ଼ି ଯୋଗାଡ଼ କରନ୍ତୁ ।

ସୁମନ୍ତ : ସାର୍ ।

ପୋ.ଇ : ଆଉ ଡେ଼ରି କାଇଁକି କରୁଚନ୍ତି ?

ଇ.ଅ : ସୁମନ୍ତବାବୁ ! ନିଅନ୍ତୁ ଏଇ ପଚାଶ ଟଙ୍କା ସେମାନଙ୍କୁ ଆଡଭାନ୍ସ ଦେବେ ।

ସୁମନ୍ତ : ନାଇଁ ସାର୍ ଥାଉ, ସେମାନେ କାମ କରି ସାରିବା ପରେ ନେବେ ।

ପୋ.ଇ : ଧରୁନା ଧର । ସେମାନେ ପଛେ ନେଇଥାନ୍ତେ, ଆଗେ ନେବେ । ସେମାନଙ୍କୁ ଆଡ୍‌ଭାନ୍ସ ଦେଇଦେଲେ ତାଙ୍କର କାମରେ ମନ ଲାଗିବ ।

ଇ.ଅ : ନିଅନ୍ତୁ । (ସୁମନ୍ତ ଟଙ୍କା ନେଲେ ।) ଦେଖନ୍ତୁ, ଡେରି କରିବେ ନେଇଁ ।

ସୁମନ୍ତ : ନାଇଁ ସାର୍ ମୁଁ ଏଇ ସାଙ୍ଗେସାଙ୍ଗେ ଆଣିକି ଆସୁଚି । (ପ୍ରସ୍ଥାନ)

ଇ.ଅ : ହରି ଏଠିକି ଆସିଲ ?

ହରିଆ : କ'ଣ ଆଜ୍ଞା ?

ଇ.ଅ : ତୁମେ କଟକର ଶିଳ୍ପପତି ଜଗଦୀଶ ଜାଜୋଡିଆଙ୍କୁ ଚିହ୍ନିଚ ?

ହରିଆ : ନାଇଁ ଆଜ୍ଞା ।

ଇ.ଅ : ତମେ ମିଛ କହୁଚ ।

ହରିଆ : ମୁଁ ଆଜିଯାଏ କଟକ ଦେଖି ନେଇଁ ।

ଇ.ଅ : ଜାଜୋଡ଼ିଆ ଏଠିକି ତୁମ ପାଖକୁ କେବେ ଆସିଥିଲେ କି ?

ହରିଆ : ନାଇଁ ହଜୁର । ମୁଁ ତାଙ୍କୁ ମୋଟେ ଚିହ୍ନିନେଇଁ ।

ପୋ.ଇ : ତାଙ୍କ ଲୋକ କିଏ ତମ ଗାଆଁକୁ ଆସି ତମ ସାଙ୍ଗରେ କିଛି କଥାବାର୍ତ୍ତା କରିଥିଲା କି ?

ହରିଆ : କାହା ଲୋକ ?

ଇ.ଅ : ଜାଜୋଡ଼ିଆଙ୍କ ଲୋକ । ଜାଜୋଡ଼ିଆ କଟକର ଜଣେ ବଡ଼ ଶିଳ୍ପପତି । ତାଙ୍କର ଚାରିଟା ବଡ଼ ବଡ଼ କାରଖାନା ଅଛି । ତାଙ୍କର

ବହୁତ ରୋଜଗାର । କିନ୍ତୁ ସିଏ ଜମା ଆୟକର ଦଉ ନାହାଁନ୍ତି । ତାଙ୍କ ଘର ଆମେ ଖାନ୍‌ତଲାସ କରିଥିଲୁ । କିଛି ମିଳିଲା ନାହିଁ । ଆମେ ଖବର ପାଇଲୁ ଜାଙ୍କୋଡିଆ ତାଙ୍କର ଧନ ସଂପତ୍ତି ତମରି ଏଇ କୁଡ଼ିଆ ଘରେ ଲୁଚେଇ ରଖିଛନ୍ତି ।

ହରିଆ : ଏସବୁ ବିଲ୍‌କୁଲ୍ ମିଛ ହଜୁର । ମୁଁ ସେ ଲୋକକୁ ବିଲ୍‌କୁଲ୍ ଚିହ୍ନିନେଇଁ, ବିବାକେ ଜାଣି ନେଇଁ । ମୋ ଘରେ କେହି କିଛି ରଖି ନେଇଁ ।

ପୋ.ଇ : ତାକୁ ପଚାରିଲେ ସିଏ ମୋଟେ ମାନିବ ନେଇଁ । ପୋତା ମାଲ୍‌ଟା ବାହାରି ପଡ଼ିଲେ ସବୁକଥା ବଳେ ସଫା ହେଇଯିବ ।

ଇ.ଅ : ଦେଖ ହରି, ତମ ଭଲ ପାଇଁ ମୁଁ କହୁଛି । ତମେ ନିଜେ ସବୁକଥା ମାନିଗଲେ ତମକୁ ଆମେ ସରକାରୀ ସାକ୍ଷୀ କରିଦେବୁ । ତମର କିଛି ହବ ନେଇଁ । ବରଂ ତମେ କିଛି ଟଙ୍କା ପାଇବ ।

ହରିଆ : ମୁଁ ସେସବୁ କିଛି ଜାଣିନେଇଁ ବାବୁ ।

ଇ.ଅ : ତମର ସମସ୍ତ ଚାଲ୍ ଆଉ ଅଳ୍ପ ସମୟ ଭିତରେ ଜଣା ପଡ଼ିଯିବ । ତୁମ ନିଜ ଜାଲରେ ତୁମେ ନିଜେ ଛନ୍ଦି ହୋଇ ଧରାପଡ଼ିବ ।

ହରିଆ : ମତେ ବିଶ୍ୱାସ କରନ୍ତୁ ହଜୁର । ମୁଁ ନିହାତି ଗରିବ ଲୋକ । ମୁଁ କଟକ ଦେଖି ନେଇଁ କି କଟକର କାହାକୁ ଜାଣି ନେଇଁ ।

ଇ.ଅ : ଆମେ ଏମିତି କେତେ କେଶ୍ ଧରିଛୁ । ତମେ ନମାନିଲେ ବି ଆମେ ତୁମର ସମସ୍ତ ଚେର ଖୋଳି ତାଡି ବାହାର କରିବୁ ।

ସୁମନ୍ତ : (ପ୍ରବେଶି) ଖୋଳିବା ଲୋକ ଆସିଗଲେ ସାର୍ । (ସୁମନ୍ତଙ୍କ ପଛେ ପଛେ ଦୁଇଜଣ ଲୋକ ଆସିଲେ । ସେମାନଙ୍କ ହାତରେ ଥିଲା ଶାବଳ, କୋଡ଼ି, ଫାଉଡା ଓ ଝୁଡ଼ି ।)

ଇ.ଅ : ଠିକ୍ ଅଛି । କର୍ତ୍ତାର ସିଂ ।

କର୍ତ୍ତାର : (ପ୍ରବେଶି) ସାର୍ ।

ଇ.ଅ : ଏ ଲୋକମାନଙ୍କୁ ଏ ଘର ଭିତରକୁ ନେଇ ଘର ଭିତରଟାକୁ ଖୋଳାଅ । ଦେଖ, ମାଟି ତଳେ କ'ଣ ସବୁ ପୋତାମାଲ୍ ଅଛି ।

କର୍ତ୍ତାର : ସାର୍ ।

ଇ.ଅ : ସୁମନ୍ତବାବୁ । ଆପଣ ମଧ୍ୟ ସେମାନଙ୍କ ପାଖରେ ରହି ମାଟି ଖୋଳା କାମ ତଦାରଖ କରନ୍ତୁ ।

ସୁମନ୍ତ : ଚାଲ, ଘର ଭିତରକୁ ଚାଲ ।
(କର୍ତାର ସିଂ, ମାଟିଖୋଳିବା ଲୋକ ଦୁଇଜଣ ଓ ସୁମନ୍ତ ଘର ଭିତରେ ପଶିଲେ ।)

ଇ.ଅ : ଅଭିଜିତବାବୁ ! ମୁଁ ଭାବୁଛି, ଘର ଭିତରେ ଗୋଟେ ଆଇରନ୍ ଚେଷ୍ଟ ଭିତରେ ସବୁ ମୂଲ୍ୟବାନ ପଦାର୍ଥ ପୂରାଇ ପୋତାଯାଇଛି ।

ପୋ.ଇ : ମୁଁ କିନ୍ତୁ ଆପଣଙ୍କଠାରୁ ସାମାନ୍ୟ ଡିଫର୍ କରୁଛି ।

ଇ.ଅ : ଡିଫର୍ କରୁଚନ୍ତି ?

ପୋ.ଇ : ଆପଣ ଭାବୁଛନ୍ତି ଗୋଟେ ଆଇରନ୍ ଚେଷ୍ଟ ପୋତା ଯାଇଛି । କିନ୍ତୁ ମୁଁ କହୁଚି ନା ।

ଇ.ଅ : ଆପଣ ତା ହେଲେ ଆଉ କ'ଣ କହୁଚନ୍ତି ?

ପୋ.ଇ : ମୁଁ ଭାବୁଛି, ଆଇରନ୍ ଚେଷ୍ଟ ପୋତିବା ପରି ବୋକାମି ଆଉ ଯିଏ କରିପାରେ କିନ୍ତୁ ଏ ଧୂର୍ତ୍ତ ହରି ନାୟକ କରିବ ନାହିଁ । (ଏଇ ସମୟରେ ଘର ଭିତରୁ ମାଟି ଖୋଳିବା ଶବ୍ଦ ଶୁଭିଲା ।)

ଇ.ଅ : ସେମାନେ ମାଟି ଖୋଳିବା ଆରମ୍ଭ କରି ଦେଲେଣି । ଆଉ ଅଳ୍ପ ସମୟ ପରେ ସବୁ ଜଣା ପଡ଼ିଯିବ । ତେବେ ଆପଣ କ'ଣ କହୁଥିଲେ ?

ପୋ.ଇ : ଆଇରନ୍ ଚେଷ୍ଟ ମାଟିତଳେ ପୋତାଗଲେ କିଛି ଦିନ ପରେ ସେଥିରେ କଳଙ୍କି ଲାଗିଯିବାର ସମ୍ଭାବନା ଅଛି । ତେଣୁ ସେ ମୋଟେ ଆଇରନ୍ ଚେଷ୍ଟ ପୋତି ନଥିବ ।

ଇ.ଅ : ଆଉ କ'ଣ ପୋତିଥିବ ?

ପୋ.ଇ : ମୋର ଅନୁମାନ ଅତି ପୁରୁଣା କାଳିଆ ପିତଳ ସିନ୍ଦୁକ ପୋତା ଯାଇଛି । ପିତଳକୁ ମାଟି ଛୁଇଁବ ନାହିଁ । ସିଏ ମାଟି ତଳେ ସୁନା ପରି ଡାଉଡାଉ ହେଉଥିବ ।

ଇ.ଅ : କଂସାର ସିନ୍ଦୁକ ମଧ୍ୟ ହୋଇପାରେ ।

ପୋ.ଇ : ହଁ, ତା ବି ହୋଇପାରେ ।

ଇ.ଅ : ଆମେ ଚାଲନ୍ତୁ ଦେଖିବା, ଖୋଳାଖୋଳି କାମ କେତେ ଦୂର ଗଲା ।

ପୋ.ଇ : ପାହାଡ଼ ସିଂ ।

ପାହାଡ଼ : ସାର୍ ।

ପୋ.ଇ : ତୁ ଏଇଠି ହରି ନାୟକ, ତା ସ୍ତ୍ରୀ ଆଉ ତା ଝିଅକୁ ଜଗିଥିବୁ । ସେମାନେ ଯେମିତି କୁଆଡ଼େ ଚାଲି ନଯାଆନ୍ତି ।

ପାହାଡ଼ : ସାର୍ ।

ପୋ.ଇ : ଚାଲନ୍ତୁ ସମର ବାବୁ ।
(ପୋଲିସ ଇନ୍ସପେକ୍ଟର ଓ ଇନ୍‌କମ୍‌ଟ୍ୟାକ୍ସ ଅଫିସର ହରିନାୟକର ଘର ଭିତରକୁ ପଶିଲେ ।)

ବିମଳି : ଆମ ଘରଟାକୁ ସେମାନେ ଖୋଳି ପକାଉଚନ୍ତି । ଘର ଭିତରଟା ଏମିତି ଖୋଳିଲେ ଆମେ ଚଳିବା କେମିତି ? ତମେ ସେମାନଙ୍କୁ ମନା କର ।

ହରିଆ : ସେମାନେ ମୋ କଥା ମାନିବେ ନେଇଁ ।

ବିମଳି : ଆମ ଘର ଭିତରଟା ସେମାନେ ଖୋଳିବେ ଆମେ ତାଙ୍କୁ ମନା କରିବା ନେଇଁ ? ଇଏ କୁଆଡ଼ିଆ କଥା ?

ରମା : ବାପା ତମେ ତାଙ୍କୁ କୁହ, ସେମାନେ ଆମ ଘର କାଇଁକି ଖୋଳୁଚନ୍ତି ? ତାଙ୍କୁ ବନ୍ଦ କର ବାପା ।

ହରିଆ ସେମାନେ ମୋ କଥା ଶୁଣିବେ ନେଇଁ । ସେମାନେ ଫେରି ଯାଆନ୍ତୁ ମୁଁ ପୁଣି ଖୋଳିଥିବା ଗାଡ଼ ସବୁ ପୋତିଦେବି ।

ବିମଳି : ମତେ ଲାଗୁଚି ସେମାନେ ଆମ ଘରର କାନ୍ଥପାଖକୁ ଲଗାଇକି ଖୋଳୁଚନ୍ତି । କାନ୍ଥ ଧସିଯିବ । ସେମାନଙ୍କୁ କୁହ କାନ୍ଥଠୁ ଛଡ଼ାଇ ସେମାନେ ଖୋଳନ୍ତୁ । (ଏଇ ସମୟରେ ଘର ଭିତରୁ କଥାବାର୍ତ୍ତା ହୋଇ ଫେରିଲେ ପୋ.ଇ ଏବଂ ଇ.ଅ ।)

ଇ.ଅ : ଏତେ ଖୋଳା ହେଲାଣି କିଛି ଥିଲା ଭଳି ଦିଶୁ ନେଇଁ । ମୁଁ ଭାବୁଛି ଘର ଭିତରୁ ବାହାରକୁ କୋଉଠି ଗୋଟେ ସୁଡ଼ଙ୍ଗ ଥାଇପାରେ ।

ପୋ.ଇ : କିନ୍ତୁ କୋଉଠି ସୁଡ଼ଙ୍ଗ ଅଛି ?

ଇ.ଅ : ଆମେ ତ ସାରା ଘରଟା ଖୋଳାଇ ସାରିଲେଣି, ଆଉ କୋଉଠି କିଛି ସୂଚନା ମିଳୁନାହିଁ ।

ପୋ.ଇ : ଆଚ୍ଛା ସମରବାବୁ । ମେଟାଲ୍ ଡିଟେକ୍ଟର ଅଛି ନା ନାହିଁ ?

ଇ.ଅ : ନାଇସ୍ ଆଇଡିଆ । ମେଟାଲ ଡିଟେକ୍ଟର ବୁଲାଇ ଦେଲେ ଜଣା ପଡ଼ିଯିବ ।

ପୋ.ଇ : ଆଉ ଡେରି କାହିଁକି ? ମେଟାଲ୍ ଡିଟେକ୍ଟରଟା ଗାଡ଼ିରୁ ମଗାନ୍ତୁ ।

ଇ.ଅ : କାର୍ତ୍ତାର ସିଂ !

କର୍ତ୍ତାର : (ଘର ଭିତରୁ ବାହାରି ଆସିଲା) ସାର୍ ।

ଇ.ଅ : ଆମ ଗାଡ଼ିରେ ଥିବା ମେଟାଲ୍ ଡିଟେକ୍ଟରଟା ନେଇଆସ ।

କର୍ତ୍ତାର : ସାର୍ । (ପ୍ରସ୍ଥାନ)

ଇ.ଅ : ସୁମନ୍ତବାବୁ । ସୁମନ୍ତବାବୁ !

ସୁମନ୍ତ : (ଘର ଭିତରୁ ବାହାରି ଆସିଲେ ।)

ଇ.ଅ : ସେ ଲୋକମାନଙ୍କୁ କୁହନ୍ତୁ, ସେମାନେ ଘର ଭିତରଟା ଖୋଳିବା ବନ୍ଦ କରନ୍ତୁ ।

ସୁମନ୍ତ : ଆଉ ତାହେଲେ କୋଉ ଜାଗା ଖୋଳିବେ ?

ପୋ.ଇ : ଆମେ ମେଟାଲ ଡିଟେକ୍ଟର ବୁଲାଇବାର ବ୍ୟବସ୍ଥା କରୁଛୁ । ଯୋଉ ସ୍ଥାନରେ ସୂଚନା ମିଳିବ ସେଇ ସ୍ଥାନଟା ଖୋଳାଯିବ । ସେମାନେ ଅପେକ୍ଷା କରନ୍ତୁ ।

ସୁମନ୍ତ : ମୁଁ ଯାଇ ସେମାନଙ୍କୁ ମନା କରୁଛି । (ସୁମନ୍ତ ଘର ଭିତରକୁ ପଶିଲେ । ଘର ଭିତରେ ମାଟିଖୋଳା ଶବ୍ଦ ବନ୍ଦ ହୋଇଗଲା । ମାଟି ଖୋଳିବା ଲୋକମାନେ ଓ ସୁମନ୍ତବାବୁ ଘର ଭିତରୁ ବାହାରି ଆସିଲେ ।)

ଇ.ଅ : (ମାଟି ଖୋଳା ଲୋକଙ୍କ ପ୍ରତି) ତମେ ସବୁ ଟିକେ ଅପେକ୍ଷା କର ।

କର୍ତ୍ତାର : (ପ୍ରବେଶ) ସାର୍ ମେଟାଲ୍ ଡିଟେକ୍ଟର ।

ଇ.ଅ : ତମେ ଆଗ ଘର ଭିତରେ ବୁଲାଅ । କୋଉଠି କିଛି ପୋତାମାଲ୍ ଥିବା'ର ସୂଚନା ମିଳୁଚିକି ନାହିଁ ଦେଖ ।

କର୍ତ୍ତାର : ସାର୍ । (କର୍ତ୍ତାର ସିଂ ମେଟାଲ୍ ଡିଟେକ୍ଟର ଧରି ଘର ଭିତରେ ପଶିଲା ।)

ହରିଆ : ମୋ ଘରଟା ଏମିତି ଖୋଳନା ବାବୁ ! ଆମେ ରହିବୁ କେମିତି ?

ବିମଳି : ଆମେ ଭାରି ଗରିବ ଲୋକ ହଜୁର । ଆମ ଘର ଭିତରଟା ଖୋଳିକି ଏମିତି ନଷ୍ଟ କରିଦେଲେ ଆମେ ରହିବୁ କୋଉଠି ?

ହରିଆ : ଆମ ଗୁହାରି ଟିକେ ଶୁଣନ୍ତୁ ହଜୁର । ଆମେ କେମିତି ରହିବୁ ?

ଇ.ଅ : ତମେ କହି ଦଉନା କୋଉଠି ସବୁ ପୋତିଚ, ଆମେ କେବଳ ସେଇ ଜାଗାଟା ଖୋଳନ୍ତୁ ।

ଆନନ୍ଦ ଚନ୍ଦ୍ର ପହି

ହରିଆ : ମୁଁ କୋଉଠି କିଛି ପୋତି ନେଇଁ ହଜୁର ।

ପୋ.ଇ : ତୁ ନିର୍ଦ୍ଦିଷ୍ଟ ସ୍ଥାନଟା ନଦେଖେଇଲା ପର୍ଯ୍ୟନ୍ତ ତୋ ଘର ଆମେ ଖୋଳି ଚାଲିଥିବୁ ।

ବିମଳି : ଯେତେ ଖୋଳିଲେ ବି କୋଉଠୁ କିଛି ପାଇବ ନେଇଁ । ମିଛଟାରେ ଘରଟା ଖୋଳିକି ଜାରଖାର କରି ଦଉଚ ।

କର୍ତ୍ତାର : (ମେଟାଲ୍ ଡିଟେକ୍ଟର ଧରି ଘର ଭିତରୁ ପଦାକୁ ଆସିଲା ।) ନାଇଁ ସାର୍, କୋଉଠି କିଛି ସୂଚନା ମିଳୁ ନାହିଁ ।

ହରିଆ : ମୁଁ କହୁଚି ଆଜ୍ଞା କିଛି ନାହିଁ । ମିଛରେ ଘରଟା ସାରା ଖୋଳି ପକେଇଲେ ।

ପୋ.ଇ : ତୁ ଚୁପ୍ କର ।

ଇ.ଅ : କର୍ତ୍ତାର ସିଂ ।

କର୍ତ୍ତାର : ସାର୍ ।

ଇ.ଅ : ଏଇ ଅଗଣା ଆଉ ଘର ପଛପଟ ସବୁଆଡ଼େ ମେଟାଲ୍ ଡିଟେକ୍ଟର ବୁଲାଇ ଆଣ । ଆଗ ଏଇ ଅଗଣାଟା ବୁଲା ।

କର୍ତ୍ତାର : ସାର୍ । (କର୍ତ୍ତାର ସିଂ ଅଗଣାର ଚାରିଆଡ଼ ମେଟାଲ ଡିଟେକ୍ଟର ବୁଲାଇଲା । ଇ.ଅ ତାକୁ ନିର୍ଦ୍ଦେଶ ଦେଲେ ଏପଟେ ବୁଲା, ସେପଟେ ବୁଲା । କିନ୍ତୁ କିଛି ସୂଚନା ମିଳିଲା ନାହିଁ ।)

ଇ.ଅ : ନା, ଏ ଅଗଣାରେ କିଛି ନାହିଁ ।

ପୋ.ଇ : ଅଗଣାରେ ନଥିବା ସ୍ୱାଭାବିକ । ଏଟା ତା ଘର ଆଗପଟ । ସିଏ ଆଗ ପଟେ ନପୋତି ପଛପଟେ ପୋତିଥିବ । ପଛପଟରେ ବୁଲାନ୍ତୁ ।

ଇ.ଅ : ଠିକ୍ ଅଛି । କର୍ତ୍ତାର ସିଂ ।

କର୍ତ୍ତାର : ସାର୍ ।

ଇ.ଅ : ହରିନାୟକର ଘର ପଛପଟେ ମେଟାଲ ଡିଟେକ୍ଟର ବୁଲାଅ । କିଛି ସୂଚନା ଦେଲେ ଆମକୁ ଆସି ଖବର ଦେବ ।

କର୍ତ୍ତାର : ସାର୍ ।

(ମେଟାଲ୍ ଡିଟେକ୍ଟର ଧରି କର୍ତ୍ତାର ସିଂ ଘର ପଛପଟକୁ ଗଲା)

ପୋ.ଇ : ସମରବାବୁ ! ଭୋକ ଲାଗିଲାଣି, ଟିଫିନ୍ ଖାଇ ଦେଲେ କେମିତି ହୁଅନ୍ତା ?

ଇ.ଥ : ହଁ, ଭୋକ ହେଲାଣି । ଖାଇନେବା ।

ପୋ.ଇ : ତାହେଲେ ଗାଡ଼ିକୁ ଚାଲନ୍ତୁ ।

ଇ.ଥ : ଏଠୁ ଆମେ ଯିବାଟା ମୁଁ ଭାବୁଛି ଠିକ୍ ହେବ ନାହିଁ । ଗାଡ଼ି ପାଖରୁ ମଗାଇ ଆଣିବା ।

ପୋ.ଇ : ପାହାଡ଼ ସିଂ ।

ପାହାଡ଼ : ସାର୍ ।

ପୋ.ଇ. : ଗାଡ଼ିରେ ଟିଫିନ୍ ପ୍ୟାକେଟ୍ ଅଛି, ନେଇଆ ।

ପାହାଡ଼ : ସାର୍ । (ପ୍ରସ୍ଥାନ)

ପୋ.ଇ : ଖାଲି ଟିଫିନ୍‌ରେ କାମ ଚଳିବ ନେଇଁ । ଯା' ପରେ ଲଞ୍ଚ୍ ଦରକାର ପଡ଼ିପାରେ । ଏ କାମ ସରୁସରୁ କେତେ ସମୟ ହେବ କହିଦେବ ନାହିଁ ।

ଇ.ଥ : ଦରକାର ପଡ଼ିଲେ ବନ୍ଦୋବସ୍ତ କରିବା ।

ପୋ.ଇ : ଏତେ ବେଳଠୁ ନ କହିଲେ ଏ ମଫସଲ ଅଞ୍ଚଳରେ କିଛି ମିଳିବ ନାହିଁ । ଏଠୁ କୋଡ଼ିଏ ତିରିଶ କିଲୋମିଟର ନଗଲେ ହୋଟେଲ ଏ ପାଖଆଖରେ କାହିଁ ?

ଇ.ଥ : ଆମେ କାହାକୁ ଗୋଟେ ବରାଦ କଲେ କିଏ କ'ଣ ଏଠି ଆମ ପାଇଁ ରାନ୍ଧି ଦେଇ ପାରିବ ନାହିଁ ?

ପୋ.ଇ : ହଇହୋ ସୁମନ୍ତବାବୁ !

ସୁମନ୍ତ : ସାର୍ ।

ପୋ.ଇ : ଆଚ୍ଛା, ବରାଦ କଲେ ଆମ ପାଇଁ କିଏ ଭାତ, ତର୍କାରୀ ରାନ୍ଧି ଦେଇ ପାରନ୍ତା ନାହିଁ ?

ସୁମନ୍ତ : ହଁ, ଆମ ଗାଆଁ ଫଗୁଆକୁ କହିଲେ ତା ତା' ଦୋକାନରେ ରାନ୍ଧି ଦେଇ ପାରିବ । ସିଏ ଭଲ ମାଂସ ତର୍କାରୀ ରାନ୍ଧେ ।

ପୋ.ଇ : କ'ଣ କହୁଛନ୍ତି ସମରବାବୁ ? କ'ଣ ବରାଦ କରିବା ? ମଟନ ନା ଚିକେନ ? ମଫସଲ୍ ଗାଆଁରେ ବଢ଼ିଆ ଦେଶୀ କୁକୁଡ଼ା ମିଳିବେ ।

ଇ.ଥ : ଠିକ୍ ଅଛି । ଆଗ ଟିଫିନ୍ ଖିଆ ସରୁ । ଛବି ଦେଖିବେ ତା'ହେଲେ ବନ୍ଦବସ୍ତ କରିବା ।

ପୋ.ଇ ଆଚ୍ଛା, ସୁମନ୍ତବାବୁ ! ଦରକାର ହେଲେ ଆମେ ତୁମକୁ କହିବୁ ।

ଆନଂଦ ଚଂଦ୍ର ପହି

ସୁମନ୍ତ : ହଉ ଆଜ୍ଞା । (ପାହାଡ଼ ସିଂ ଟିଫିନ୍ ଧରି ପହଞ୍ଚିଲା ।)

ଇ.ଅ : ଥୋ । ସେଇଠି ଥୋ । ଗାଡ଼ିରୁ ଦୁଇଟା ଫୋଲ୍ଡିଂ ଚେୟାର ନେଇଆ ।

ପାହାଡ : ସାର୍ । (ପ୍ରସ୍ଥାନ)

ପୋ.ଇ : ଟିଫିନ୍ ପରେ ଚା ?

ଇ.ଅ : ସେ ସବୁ ଅଛି । ଆପଣ ବ୍ୟସ୍ତ ହେଲେ ଚଳିବ ?

ପୋ.ଇ : ପ୍ୟାକେଟ୍‌ରେ କ'ଣ ଅଛି ?

ଇ.ଅ : ମୁଁ ବି ଦେଖି ନାହିଁ । ତେବେ ଯାହା ଥିବ ଆମ ଦୁଇ ଜଣଙ୍କ ପାଇଁ ଯଥେଷ୍ଟ । (ଏହି ସମୟରେ କର୍ତ୍ତାର ସିଂ ଘର ପଛ ପଟରୁ ଆସିଲା)

କର୍ତ୍ତାର : ସାର୍ ମିଳିଗଲା ?

ଇ.ଅ : କ'ଣ ମିଳିଲା ?

କର୍ତ୍ତାର : ମେଟାଲ ଡିଟେକ୍ଟର ଗୋଟେ ସ୍ଥାନରେ ସୂଚନା ଦଉଚି ।

ଇ.ଅ : ଆସନ୍ତୁ ଅଭିଜିତବାବୁ ।

ପୋ.ଇ : ଆମେ ଯାଇ କିଛି ଲାଭ ନାହିଁ । ସୁମନ୍ତବାବୁ !

ସୁମନ୍ତ : ସାର୍ ।

ପୋ.ଇ : ତମେ ଲୋକମାନଙ୍କୁ ନେଇ ସେ ସ୍ଥାନଟା ଖୋଳାଇବାର ବ୍ୟବସ୍ଥା କର । କିଛି ବାହାରିଲେ ଆମକୁ ଡାକିବ ।

ସୁମନ୍ତ : ଚାଲରେ ସବୁ, ବାରିପଟକୁ ଚାଲ ।

ଇ.ଅ : କର୍ତ୍ତାର ସିଂ ଯୋଉ ସ୍ଥାନଟାକୁ ଦେଖାଇ ଦେବ, ତମେ ସେହି ସ୍ଥାନଟାକୁ ଖୋଳାଇବାର ବ୍ୟବସ୍ଥା କର । ଯାଆନ୍ତୁ ଏଥର । (କର୍ତ୍ତାର ସିଂ, ସୁମନ୍ତ ଓ ମାଟିଖୋଳା ଲୋକ ଦୁଇଜଣ ବାରିପଟକୁ ଗଲେ ଏବଂ ପାହାଡ଼ ସିଂ ଦୁଇଟା ଫୋଲ୍‌ଡ଼ିଙ୍ଗ୍ ଷ୍ଟିଲ୍ ଚେୟାର ଆଣି ମଞ୍ଚ ଉପରେ ପକାଇଲା । ଚେୟାର ଦୁଇଟାକୁ ପିଣ୍ଡା ପାଖକୁ ଭିଡ଼ି ନେଇ ପୋ.ଇ ଓ ଇ.ଅ ଦୁହେଁ ବସିଲେ ଓ ପିଣ୍ଡା ଉପରେ ଜଳଖିଆ ଡବାଟି ଖୋଲିଲେ ।)

ଇ.ଅ : ଯାଇ ଗୋଟେ ଫ୍ଲାସ୍କରେ ଚା' ଥିଲା ନେଇ ଆସ ।

ପୋ.ଇ : ଇଉଜ୍ ଆଣ୍ଡ ଥ୍ରୋ ଗ୍ଲାସ ଦୁଇଟା ନେଇ ଆସିବୁ ।

ପାହାଡ଼ : ସାର୍ । (ପ୍ରସ୍ଥାନ)

(ପୋଲିସ ଇନ୍‌ସ୍‌ପେକ୍ଟର ଓ ଇନ୍‌କମ୍‌ଟ୍ୟାକ୍‌ସ ଅଫିସର ଟିଫିନ ଖାଇଲେ । ଅନ୍ୟ ପଟରେ ବସିଥିଲେ ହରିଆ, ବିମଳି ଓ ରମା । ରମା ଏମାନଙ୍କ ଖାଇବା ଦେଖି ତା ମାଆ ପାଖରେ କାନ୍ଦିଲା ।)

ରମା : ବୋଉ ! ଭୋକ ହେଲାଣି ।

ବିମଳି : କ'ଣ ଅଛି ଯେ ଖାଇବୁ ?

ରମା : ପଖାଳ ଦେ ।

ବିମଳି : ପଖାଳ ଘର ଭିତରେ ଅଛି । ବାବୁମାନେ ଯାଇ ସାରିଲେ ଆଣିକି ଦେବି ।

ରମା : ବାପା ! ଘର ଭିତରୁ ଭାତ ଆଣ, ମତେ ଭୋକ ହେଲାଣି ।

ହରିଆ : ମୁଁ କେମିତି ଆଣିବି ? ସେମାନେ ପା' ମତେ ଘର ଭିତରକୁ ଛାଡୁ ନାହାଁନ୍ତି ?

ବିମଳି : ଛୁଆଟା ଭୋକରେ ଆଉଟି ପାଉଟି ହେଲାଣି, ତମେ ତାଙ୍କୁ ସେ କଥା କହିକି ଆଣୁନା ?

ପୋ.ଇ : କଣ ହେଲା ?

ହରିଆ : ନାଇଁ, ଏଇ ମୋ ଝିଅଟାକୁ ଭାରି ଭୋକ ହେଲାଣି । ସିଏ କାନ୍ଦୁଚି, ପଖାଳ ଖାଇବାକୁ । ପଖାଳ ହାଣ୍ଡିଟା ଘର ଭିତରେ ଅଛି । ମୁଁ ଯାଇକି ଘିଚି ଆସିବି, ସିଏ ଖାଇବ ।

ଇ.ଅ : ନା । ସେ କଥା ହେଇ ପାରିବ ନାହିଁ । ସେ ପଟଟା ଖୋଳା ସରିଯାଉ ।

ବିମଳି : ମୋ ଛୁଆଟାର ଭୋକରେ ହଂସା ଉଡିଯିବ ।

ଇ.ଅ : କ'ଣ କରାଯିବ ? ଖାନତଲାସ ନ ସରିବା ପର୍ଯ୍ୟନ୍ତ ଆମେ ତମକୁ ଘର ଭିତରକୁ ଛାଡି ପାରିବୁ ନାହିଁ ।

ହରିଆ : ମତେ ତାହେଲେ ଅଧଘଣ୍ଟାକ ପେଇଁ ପଦାକୁ ଛାଡ଼ି ଦିଅ । ମୁଁ ତାପେଇଁ କୋଉଠୁ କ'ଣ ଦିଇଟା ଆଣେ ।

ଇ.ଅ : ନା, ଖାନତଲାସ ନ ସରିବା ପର୍ଯ୍ୟନ୍ତ ତମେ ଏଠୁ କୁଆଡ଼େ ଯାଇ ପାରିବ ନାହିଁ ।

ପୋ.ଇ ତା କଥା ଜମା ଶୁଣନ୍ତୁ ନାହିଁ ।

ହରିଆ : କୁଆଡ଼େ ପଳେଇ ଯିବି ନେଇଁ । ସାଙ୍ଗେ ସାଙ୍ଗେ ଆସିବି ।

ପୋ.ଇ : ସେ ଚାଲାକି ଏଠି ଚଳିବ ନେଇଁ ।

ହରିଆ : ମୁଁ ସତ କହୁଚି, ହଜୁର । ମୁଁ ସାଙ୍ଗେ ସାଙ୍ଗେ ପଳେଇ ଆସିବି । (ପାହାଡ଼ ସିଂ ମଞ୍ଚ ଉପରକୁ ଆସିଲା । ତା ହାତରେ ଥିଲା ଗୋଟିଏ ଚା'ପୂର୍ଣ୍ଣ ଫ୍ଲାସ୍କ ଓ ଦୁଇଟି ଅନ୍‌ବ୍ରେକେବୁଲ୍ ଗ୍ଲାସ ।)

ଇ.ଅ : ସେଇଠି ଥୁଅ । (ଇ.ଅ ଓ ପୋ.ଇ ଜଳଖିଆ ଖାଇସାରି ଚା' ପିଇଲେ)

ପୋ.ଇ : ଏ ଲୋକଟାକୁ ସେ କଡ଼କୁ ନେଇଯା ।

ପାହାଡ଼ : (ବାଡ଼ିରେ ଠେଲି ଠେଲି ନେଲା) ଚାଲ, ସେପଟକୁ ଚାଲ । ଯାଉଚୁ ନା ଦେଖିବୁ ଏଇନେ । (ବାଡ଼ି ଉଚାଇଲା ବାଡ଼େଇବାକୁ)

ହରିଆ ମୋ ଝିଅଟା ଭୋକରେ ଛଟପଟ ହଉଚି । ମତେ ଅଧଘଣ୍ଟାକ ପେଇଁ ଛାଡ଼ିଦିଅ । ମୁଁ ତା ପେଇଁ କ'ଣ ଦିଟା ଆଣେ ।

ପାହାଡ଼ ମଫସଲି ଟୁଡ଼ା । ତୁ ପୁଣି ଏ ପାହାଡ଼ସିଂ ଆଖିରେ ଧୂଳି ଦେବାକୁ ଫିସାଦି କାଢୁଚୁ ? ତୋର ସାହସ ତ କମ୍ ନୁହଁ । ଚାଲ, ସେପଟକୁ ଚାଲ । ନହେଲେ ତତେ ପିଟିପିଟି ସିଧା କରିଦେବି । ଚାଲ୍, ଚାଲ୍ ।

ହରିଆ : ମାରନା, ମାରନା ବାବୁ !

ପାହାଡ଼ : ଚୁପ୍‌ଚାପ୍ ଏଇଠି ଠିଆ ହୋ । ଖାନତଲାସ ସରିବା ପର୍ଯ୍ୟନ୍ତ ଏଇଠି ଠିଆ ହୋଇଥିବୁ । ଏକଡ଼ ସେକଡ଼ ହେଲେ କି ଖସିପଳେଇବାକୁ ଚେଷ୍ଟା କଲେ ଫାୟାର କରିଦେବି । (ଏତିକି ବେଳେ କର୍ତ୍ତାର ସିଂ ବାଡ଼ିପଟୁ ଆସି ପାଟିକରି ପ୍ରବେଶ କଲା)

କର୍ତ୍ତାର : ମିଳିଗଲା ସାର୍ । ମିଳିଗଲା ।

ଇ.ଅ : କ'ଣ ମିଳିଲା ?

କର୍ତ୍ତାର ମାଟିତଳେ ଗୋଟେ ଆଇରନ୍‌ଚେଷ୍ଟ ପୋତା ଯାଇଛି । ଶୁଣନ୍ତୁ ସାର୍ । ଆଇରନ୍ ଚେଷ୍ଟ ଉପରେ ଶାବଳର ପାହାର ଶବ୍ଦ ।

ଇ.ଅ : ହଁ, ଏଇଟା ନିଶ୍ଚୟ ଆଇରନ୍‌ଚେଷ୍ଟ ଉପରେ ଶାବଳ ମାଡ଼ର ଶବ୍ଦ । କର୍ତ୍ତାର ସିଂ ! ସେ ଲୋକମାନଙ୍କୁ କୁହ ସେମାନେ ଖୁବ୍ ସାବଧାନତାର ସହ ଖୋଳନ୍ତୁ, ଯେମିତି ଆଇରନ୍ ଚେଷ୍ଟ ଶାବଳମାଡ଼ରେ ଭାଙ୍ଗି ନଯାଏ । ଆଇରନ୍ ଚେଷ୍ଟର ଚାରିପଟେ

ଖୋଳନ୍ତୁ, ଯେମିତି ମାଟିତଳୁ ସେଟାକୁ ଅକ୍ଷତ ଅବସ୍ଥାରେ ଉଦ୍ଧାର କରିହେବ ।

ପୋ.ଇ : କର୍ଣ୍ଣାର ସିଂ ! ମୁହଁକୁ ଅନେଇଁ ଠିଆ ହେଲୁ କ'ଣ ? ଯା, ସେ ଲୋକମାନଙ୍କୁ ସେଇଆ କହ ।

କର୍ଣ୍ଣାର : ସାର୍ । (ପ୍ରସ୍ଥାନ)

ପୋ.ଇ : ହରିଆ ।

ହରିଆ : ହଜୁର ।

ପୋ.ଇ : ତୁ ଗୋଟେ ପକ୍କା ବଦମାସ ।

ହରିଆ : କ'ଣ ହେଲା ଆଜ୍ଞା ? ମୁଁ କ'ଣ କଲି ?

ପୋ.ଇ : ଉପରକୁ ଗରିବ, ନିରୀହ, ଖୁବ୍ ସାଦାସିଧା ମଣିଷ ।

ହରିଆ : ମୁଁ କିଛି ଜାଣିନେଇଁ ହଜୁର ।

ଇ.ଅ : ତମେ ପରା କୋଉଠି କିଛି ପୋତି ନଥିଲ ?

ହରିଆ : ନାଇଁ, ହଜୁର ।

ଇ.ଅ : ଆଉ ଏ ଆଇରନ୍ ଚେଷ୍ଟ କୁଆଡୁ ଆସିଲା ?

ହରିଆ : ସିଏ କ'ଣ ବାବୁ ?

ପୋ.ଇ : ତୁ କିଛି ଜାଣି ନଉଁ ?

ହରିଆ : ନାଇଁ ହଜୁର ।

ପୋ.ଇ : ଶଳା ପକ୍କା ମାଡୁଆଟାଏ । ତୋ ବାରିପଟେ ଦଶଫୁଟ ଗହୀରରେ ଗୋଟେ ଲୁହା ଆଲ୍ମାରୀ ପୋତା ହେଇଚି, ତୁ ଜାଣିନଉଁ ?

ହରିଆ : ଲୁହା ଆଲମାରୀ ? ନାଇଁ, ହଜୁର ମୁଁ ସେସବୁ କିଛି ଜାଣିନେଇଁ ।

ଇ.ଅ : ତମେ କାଇଁକି କିଛି ଜାଣିବ ? ଜାକୋଡ଼ିଆର ମାଲ୍ । ସିଏ ଆଣି ତମ ଅଜାଣତରେ ତମ ବାରିରେ ଗାଡ଼ ଖୋଳି ପୋତି ଦେଇ ଯାଇଥିବେ ।

ପୋ.ଇ : ଯିଏ ସବୁଜାଣି, କିଛି ନଜାଣିଥିବାର ସଫଳ ଅଭିନୟ କରିପାରେ ସିଏ ସବୁଠୁ ମାରାତ୍ମକ ଲୋକ । (ସୁମନ୍ତବାବୁ ବାରିପଟରୁ ଆସିଲେ । ଖୋଳିବା ଶବ୍ଦ ବନ୍ଦ ହୋଇଗଲା)

ଇ.ଅ : ସୁମନ୍ତବାବୁ ! ଖୋଳିବା କାହିଁକି ବନ୍ଦ କଲ ? କ'ଣ ଆଇରନ୍ ଚେଷ୍ଟଟା ସଂପୂର୍ଣ୍ଣ ପଦାକୁ ବାହାରି ପଡ଼ିଲା ? ଚାଲନ୍ତୁ ଦେଖିବା ଚାଲନ୍ତୁ । ଅଭିଜିତବାବୁ ! ଚାଲନ୍ତୁ ଦେଖିବା ।

ଆନଂଦ ଚଂଦ୍ର ପଣ୍ଡା

ସୁମନ୍ତ : ନାଇଁ ସାର୍ ।

ଇ.ଅ : ପୁଣି ନାଇଁ ସାର୍ କ'ଣ ? ଆଇରନ୍ ଚେଷ୍ଟଟା ପୂରା ବାହାରି ନେଇଁ ? ତାହେଲେ ଖୋଳାବନ୍ଦ କଲ କାହିଁକି ?

ପୋ.ଇ : ଯା, ଶୀଘ୍ର ଖୋଳା ଚାଲୁକର । ଆଇରନ୍‌ଚେଷ୍ଟଟା ଅକ୍ଷତ ଅବସ୍ଥାରେ ବାହାରିବା ପର୍ଯ୍ୟନ୍ତ ଖୋଳିବା ବନ୍ଦ କରନା ।

ସୁମନ୍ତ : ନାଇଁ ସାର୍ ସେଟା ଆଇରନ୍ ଚେଷ୍ଟ ନୁହଁ ।

ପୋ.ଇ : ବୁଝିଲେ ସମରବାବୁ ! ମୁଁ ପ୍ରଥମେ କହିଛି ସେଟା ଆଇରନ୍ ଚେଷ୍ଟ ନୁହଁ ।

ଇ.ଅ : ଆଉ କ'ଣ ?

ପୋ.ଇ ଆପଣ ଏତେ ଶୀଘ୍ର ଭୁଲିଗଲେ ?

ଇ.ଅ କାଇଁ ମୋର ତ କିଛି ମନେପଡୁନାହିଁ ।

ପୋ.ଇ ପିତଳ ସିନ୍ଦୁକ ।

ସୁମନ୍ତ : ନା ସାର୍ । ଲୁହା ଆଲମାରୀ ନୁହଁ କି ପିତଳ ସିନ୍ଦୁକ ବି ନୁହଁ ।

ଇ.ଅ ଆଉ ତା'ହେଲେ କ'ଣ ?

ସୁମନ୍ତ ଭଙ୍ଗା ଧାନଉଷୁଆଁ ଲୁହା କଡ଼େଇଟାଏ ସାର୍ । ମାଟି ଭିତରେ ଓଲଟିକି ପୋତା ପଡ଼ି ଯାଇଥିଲା ।

ପୋ.ଇ ଏଇ ଲୁହା କଡ଼େଇଟା ତାହେଲେ ମେଟାଲ ଡିଟେକ୍ଟର ସୂଚନା ଦେଇଥିଲା ।

ଇ.ଅ : ସେଇ ଜାଗାରେ ଆଉ ଥରେ ମେଟାଲ୍ ଡିଟେକ୍ଟର ଦେଖାଇ ଦେଲେ ଜଣା ପଡ଼ିଯିବ ଆଉ ସେଠି କିଛି ଅଛି କି ନାହିଁ । କର୍ତ୍ତାର ସିଂ ।

ସୁମନ୍ତ : କର୍ତ୍ତାର ସିଂ ସେଇ ବାରିପଟେ ଅଛନ୍ତି ।

ପୋ.ଇ : ଚାଲନ୍ତୁ । ପାହାଡ଼ ସିଂ । ଏ ଲୋକ ଉପରେ ନଜର ରଖିଥା ।

ପାହାଡ଼ : ସାର୍ । (ପୋଲିସ୍ ଇନିସ୍‌ପେକ୍ଟର ଓ ଇନ୍‌କମ୍‌ଟ୍ୟାକ୍ସ ଅଫିସର ବାରିପଟକୁ ଗଲେ । ତାଙ୍କ ପଛେପଛେ ଗଲେ ସୁମନ୍ତବାବୁ । ଏତିକି ବେଳେ ପାଦ ଚିପିଚିପି ପ୍ରବେଶ କରିଛନ୍ତି ରାଧୁଆ ଓ ମାଧୁଆ)

ରାଧୁଆ : ପୋଲିସିବାବୁ !

ପାହାଡ଼ : ତମେ ଦିଇଟା ପୁଣି କୁଆଡ଼େ ?

ମାଧୁଆ : ନାଇଁ କିଛି ନାହିଁ । ରାଧୁଆ କିରେ କହନୁ !

ପାହାଡ଼ : କ'ଣ ? କ'ଣ ଦବ ? କାହାକୁ ଦବ ? କାହାକୁ ?

ମାଧିଆ : କାହାକୁ ନୁହଁ । କିଛି ନୁହଁ । (ରାଧୁଆ ଗୋଟେ ସିଗାରେଟ୍ ଓ ଗୋଟେ ଦିଆସିଲ୍ ଦେଖାଇଲା ।)

ପାହାଡ଼ : ଆରେ ସେଇଟା କ'ଣ ?

ରାଧୁଆ : (ଲୁଚାଇ ଦେଲା ସିଗାରେଟ୍ ଓ ଦିଆସିଲ) କାଇଁ, କ'ଣ କୋଉଠି ?

ପାହାଡ଼ : ତୋ ହାତ ଦେଖାଇଲୁ ?

ରାଧୁଆ : (ଦୁଇହାତ ଦେଖାଇ ଦେଲା) ଦେଖୁନା, ମୋ ହାତରେ କିଛି ନାହିଁ ।

ପାହାଡ଼ : ମୁଁ ଦେଖିଚି, ତୁ ଗୋଟେ ସିଗ୍ରେଟ ଆଉ ଦିଆସିଲି ଧରିଥିଲୁ ।

ରାଧୁଆ : ମୋ ହାତ ପରା ତମେ ଦେଖିଲ । କାଇଁ, କିଛି ନାହିଁ । କିଛି ନଥିଲା ।

ମାଧିଆ : ପୋଲିସିବାବୁ । ଏଇ ହରିଆ ଘରୁ କ'ଣ ସବୁ ବାହାରିଲା ?

ପାହାଡ଼ : ମୁଁ କିଛି ଜାଣି ନେଇଁ ?

ରାଧୁଆ : ତମେ ତ ଖାନ୍‌ତଲାସ କରୁଚ, ତମେ ଜାଣିନା ଆଉ କିଏ ଜାଣିଚି ?

ପାହାଡ଼ : ମୁଁ ଯୋଉଠି, ତମେ ସେଇଠି । ମୁଁ କେମିତି ଜାଣିବି ?

ମାଧିଆ : ଆମେ ଏଇଠି ହରିଆ ଆଉ ତା ସ୍ତ୍ରୀ ପିଲାଙ୍କୁ ଜଗିଚୁ । ତମେ ଟିକେ ଭିତରକୁ ଯାଇକି ବୁଝି ଆସୁନା ।

ପାହାଡ଼ : କ'ଣ କହିଲୁ ? ମୁଁ ଯିବି ବୁଝିବାକୁ ? ତୋର ତ ଭାରି ସାହାସ ?

ରାଧୁଆ : ନାଇଁ ଆଜ୍ଞା ! ଏଇ ଆମ ଗାଆଁଲୋକ କେହି କିଛି ଜାଣିପାରୁ ନାହାଁନ୍ତି ତ, କିଏ  କେତେ ପ୍ରକାର କହୁଚନ୍ତି ।

ପାହାଡ଼ : କ'ଣ କହୁଚନ୍ତି ?

ମାଧିଆ : କିଏ କହୁଚି ହରିଆ ଘରୁ ପଚାଶଟା ସୁନା ଇଟା ବାହାରିଲାଣି, ଆଉ କିଏ କହୁଛି ବୋରେ ହୀରା, ଆଉ କିଏ କହୁଛି ଗୋଟେ ଟଙ୍କା ସିନ୍ଦୁକ ମାଟିତଳୁ ବାହାରିଛି ।

ପାହାଡ଼ : ତାଙ୍କୁ ଏସବୁ କିଏ କହିଲା ?

ରାଧୁଆ : ନାଇଁ ଆଜ୍ଞା ଏ ମାଧିଆ କଥା ମୋତେ ଶୁଣନ୍ତୁ ନେଇଁ । ଏଟା ପକ୍କା ବାଆଷଠିଆଟାଏ । (ରାଧୁଆ ଗୋଟେ ସିଗାରେଟ୍ ଓ

ଦିଆସିଲି କାଢ଼ି ପାହାଡ଼ ସିଂର ହାତକୁ ବଢ଼ାଇ ଦେଲାବେଳେ ସିଏ ତା' ହାତରୁ ଝାମ୍ପିନେଲା । ପାହାଡ଼ ସିଂ ସିଗାରେଟ୍ ଲଗାଇଲା ।)

ପାହାଡ଼ : (ସିଗାରେଟ୍ ଖାଇ ଧୂଆଁ ଛାଡ଼ି) ମୋ ଆଖି ଯାହା ଉପରେ ପଡ଼ିଛି, ତାକୁ ତୁ ତ ତୁ, ତୋ ଚଉଦ ପୁରୁଷ ଆସିଲେ ବି ଲୁଚାଇ ପାରିବେ ନାହିଁ ।

ରାଧୁଆ : ହେଇଟି ପୁଲିସିବାବୁ । ମତେଟିକେ ଭିତରକୁ ଛାଡ଼ି ଦିଅ ।

ପାହାଡ଼ : ନା, ସେକଥା ଆଦୌ ହେଇପାରିବ ନେଇଁ । ତମେ ଦିଟା ଯା, ମୁଁ କିଛି ସମୟ ପରେ ବୁଝିକି ତମକୁ କହିଦେବି । (ବାରିପଟରୁ ପୋଲିସ୍ ଇନିସ୍ପେକ୍ଟର ବଡ଼ ପାଟିରେ ଚିତ୍କାର କଲେ - ପାହାଡ଼ ସିଂ ! କାହା ସାଙ୍ଗରେ କଥାବାର୍ତ୍ତା କରୁଛୁ ? ସେଠି କିଏ ?)

ପାହାଡ଼ : ସାହେବ ବିରକ୍ତ ହେଲେଣି ତମେ ଦିଇଟା ଯା । ଯା, କହୁଛି । (ରାଧୁଆ ଓ ମାଧିଆ ଚାଲିଗଲେ । ବାଡ଼ିପଟରୁ ଆସିଲେ ପୋଲିସ୍ ଇନ୍‌ସପେକ୍ଟର, ଇନକମ୍‌ଟ୍ୟାକ୍ସ ଅଫିସର, ସୁମନ୍ତ, କର୍ତ୍ତାର ସିଂ ଓ ମାଟିଖୋଳା ଲୋକମାନେ ।)

ପୋ.ଇ : କାହା ସାଙ୍ଗରେ ଗପୁଥିଲୁ ?

ପାହାଡ଼ : ନାଇଁ ସାର୍ । ଏଇ ହରିଆ ।

ଇ.ଅ : ଅଭିଜିତବାବୁ ! କୋଉଠିତ କିଛି ମିଳିଲା ନାହିଁ । ଏମାନଙ୍କୁ ଏଥର ବିଦା କରିଦେବା ।

ପୋ.ଇ : ମାଟିଖୋଳା ଲୋକମାନଙ୍କୁ ସେମାନଙ୍କ ମଜୁରି ଦେଇ ଦିଅନ୍ତୁ । ସେମାନେ ଯାଆନ୍ତୁ ।

ଇ.ଅ : ସୁମନ୍ତବାବୁ !

ସୁମନ୍ତ : ସାର୍ ।

ଇ.ଅ : ଆଉ କେତେ ଟଙ୍କା ଦିଆଯିବ କୁହନ୍ତୁ ।

ସୁମନ୍ତ : ଦିଅନ୍ତୁ, ଯାହା ଦେବେ ।

ଇ.ଅ : ନାଇଁ, ଆଉ କେତେ ଦେବି ଆପଣାଙ୍କୁ କହିବାକୁ ପଡ଼ିବ ।

ସୁମନ୍ତ : ଆଉ ପଚାଶ ଟଙ୍କା ଦିଅନ୍ତୁ ।

ଇ.ଅ : (ଟଙ୍କା ଦେଲେ) ତାଙ୍କୁ ବିଦାକରି ଦେଇ ଆପଣ ଆସନ୍ତୁ ।

ସୁମନ୍ତ : ସାର୍ । (ଲୋକମାନଙ୍କ ପ୍ରତି) ଚାଲ, ପଦାକୁ ଚାଲ । (ମାଟି

ଖୋଳା ଲୋକମାନେ ଶାବଳ, କୋଡ଼ି, ଝୁଡ଼ି ଧରି ପଦାକୁ ଚାଲିଗଲେ । ସେମାନଙ୍କ ପଛେପଛେ ସୁମନ୍ତବାବୁ ଗଲେ)

ଇ.ଅ : କର୍ତ୍ତାର ସିଂ !

କର୍ତ୍ତାର : ସାର୍ ।

ଇ.ଅ : ମେଟାଲ ଡିଟେକ୍ଟରଟା ଗାଡ଼ିରେ ଥୋଇ ଦେଇ ଆସ ।

କର୍ତ୍ତାର : ସାର୍ । (ମେଟାଲ ଡିଟେକ୍ଟର ସହ ପ୍ରସ୍ଥାନ)

ପୋ.ଇ : ଖାନ୍‌ତଲାସ ତ ସରିଲା ସମରବାବୁ ! ଏଥର ଆଉ କ'ଣ କରିବା ? ଲୋକଟା ମହାଧୂର୍ତ୍ତ, ସବୁ ଗାଏବ କରି ଦେଇଛି ।

ଇ.ଅ : ଯୋଉ ସବୁ ଜିନିଷ ହରି ନାୟକ ଘରୁ ବାହାରିଲା, ତାର ଗୋଟେ ସିଜରଲିଷ୍ଟ କରି ଦେବା ।

ପୋ.ଇ : ଆଉ ତାହେଲେ ଡେରି କାହିଁକି ? ମୁଁ ଡାକୁଚି, ଆପଣ ଲେଖନ୍ତୁ । ପ୍ରୋଫର୍ମା ଅଛି ?

ଇ.ଅ : ଅଛି । ରୁହନ୍ତୁ, ମୁଁ ବାହାର କରେ । (ବ୍ରିଫ୍‌କେଶ୍‌ରୁ ପ୍ରୋଫର୍ମା ଓ କଲମ ବାହାର କଲେ ।)

ପୋ.ଇ : ସୁମନ୍ତବାବୁ !

ସୁମନ୍ତ : (ପ୍ରବେଶି) ସାର୍ ।

ପୋ.ଇ : ସେ ଲୋକମାନଙ୍କୁ ତାଙ୍କ ମଜୁରି ଦେଇ ତାଙ୍କୁ ବିଦା କରି ଦେଇ ?

ସୁମନ୍ତ : ଆଜ୍ଞା ।

ପୋ.ଇ : ହରିଆ ଘରୁ ଯାହା ସବୁ ଜିନିଷପତ୍ର ବାହାରିଲା ସେସବୁର ଗୋଟେ ତାଲିକା ହେବ । ତାକୁ ତମେ ଜିମାନାମା ନେବ ।

ସୁମନ୍ତ : ସାର୍ ।

ଇ.ଅ : ପାହାଡ଼ ସିଂ ! କର୍ତ୍ତାର ସିଂ !

ପାହାଡ଼ : ସାର୍ ।

ଇ.ଅ : କର୍ତ୍ତାର ସିଂ କୁଆଡ଼େ ଗଲା ।

କର୍ତ୍ତାର : (ପ୍ରବେଶି) ସାର୍ ।

ଇ.ଅ : ହରିନାୟକ ଘରୁ ଯାହାସବୁ ଜିନିଷ ବାହାରିଲା, ସେ ସବୁକୁ ଏଇଠି ଗୋଟେ ଜାଗାରେ ଜମା କର । ଆମେ ତାର ତାଲିକା କରିବୁ । (କର୍ତ୍ତାର ସିଂ, ପାହାଡ଼ ସିଂ ମଞ୍ଚ ଉପରେ ବୁଲିବୁଲି ଇତସ୍ତତଃ ହୋଇ ପଡ଼ିଥିବା ଜିନିଷସବୁକୁ ଗୋଟିଏ ଜାଗାରେ ଠୁଳ କରିବାରେ ଲାଗିଲେ ।)

ପୋ.ଲ : ପ୍ରଥମ ଘରଟା ଫର୍ମରେ କ'ଣ ଅଛି ?
ଇ.ଅ : ନଗଦ କ୍ୟାସ ।
ପୋ.ଲ : ଲେଖନ୍ତୁ ଆଦୌ ନାହିଁ ।
ଇ.ଅ : ହରି, ତମେ ଏଠିକି ଆସ । ଏଇଠି ଠିଆ ହୁଅ । ତମ ଘରୁ କ'ଣ ଜିନିଷ ବାହାରିଲା ତମେ ବି ଦେଖ । ଆମେ ସେ ସବୁ ଜିନିଷର ଗୋଟେ ତାଲିକା କରିବୁ । (ହରିଆ ମନ ଦୁଃଖରେ ଆସି ଠିଆ ହେଲା ।)
ପୋ.ଲ : ତା' ପର ଘରଟା କ'ଣ ଡାକନ୍ତୁ ।
ଇ.ଅ : ଦ୍ୱିତୀୟ ଘର ବ୍ୟାଙ୍କ୍ ଜମା ।
ପୋ.ଲ : ଆଦୌ ନାହିଁ ।
ଇ.ଅ : ତୃତୀୟ ଘର Ornaments, ମାନେ ଅଳଂକାର ।
ପୋ.ଲ : କିଛି ନାହିଁ । ଆଚ୍ଛା ସମରବାବୁ । ସେଗୁଡ଼ା ହୀରା ନା କାଚ ?
ଇ.ଅ : ଆପଣ କ'ଣ ଭାବୁଚନ୍ତି ?
ପୋ.ଲ : କାଚ ମାଳି ।
ଇ.ଅ : ତାହେଲେ ସେ ଘରେ ଲେଖନ୍ତୁ କାଚମାଳି ତିରିଶଟା ।
ପୋ.ଲ : ଚତୁର୍ଥ ଘର ?
ଇ.ଅ : କୋଠାବାଡ଼ି ।
ପୋ.ଲ : କୋଠାଘର ନାହିଁ । କେବଳ ମାଟିକାନ୍ଥ ଓ ଚାଳ ଛପର ବଖରାଏ ।
ଇ.ଅ : ପଞ୍ଚମ ଘର ଜମିଜମା ।
ପୋ.ଲ : ହରିଆ ! ତୋର ଜମି କେତେ ଏକର ?
ହରିଆ : ଏଇ ଘରଡିହ ଖଣ୍ଡକ ଛଡ଼ା ଆଉ କୋଉଠି କିଛି ନାହିଁ ।
ଇ.ଅ : ଷଷ୍ଠଘର ଗାଡ଼ି ମଟର ।
ପୋ.ଲ : ଗାଡ଼ି, ମଟର, କିଛି ନାହିଁ । ଆଚ୍ଛା, ତୋର ସାଇକେଲ୍ ଅଛି ?
ହରିଆ : ନାଇଁ ଆଜ୍ଞା ।
ଇ.ଅ : ସପ୍ତମ ଘର - ଫର୍ଣିଚର ଆଉ ଆସବାବପତ୍ର ।
ପୋ.ଲ : ଆଲମିରା, ଖଟ, ସୋଫା, ଫ୍ରିଜ, ୱାସିଙ୍ଗମେସିନ୍, ଟି.ଭି. ଗ୍ରାଇଣ୍ଡର, କ୍ୟାମେରା, ଭିସିଆର, ଏମିତିକି ଚେୟାର, ଟେବୁଲ ମଧ୍ୟ ନାହିଁ । କିଛି ନାହିଁ ।

ଇ.ଅ : ଫର୍ମ ଅନୁସାରେ ତ ଏଠି କିଛି ଜିନିଷ ନାହିଁ, ହରିଆ ଘରୁ ଯେଉଁ ସବୁ ଜିନିଷ ବାହାରିଲା ତାର ଗୋଟେ ସ୍ୱତନ୍ତ୍ର ତାଲିକା ତିଆରି କରି ଦେବା ।

ପୋ.ଇ : ହଉ, ଏଥର ଲେଖନ୍ତୁ । ଗୋଟେ କୁଲା, ପେଟରା ଗୋଟେ, କାଠ ପାନିଆ ଗୋଟେ । କ'ଣ ଲେଖିଲେ ?

ଇ.ଅ : କାଠ ପାନିଆ ଗୋଟେ । ତାପରେ ?

ପୋ.ଇ : ମଶିଣା ଗୋଟେ, ଚିରା ମୁଚୁଳା ଦିଇଟା, ଛାଞ୍ଚୁଣି ମୁଠେ, ପିଢ଼ା ଗୋଟେ, ଭଙ୍ଗା ଧାନଉଁଷାକଡ଼େଇ ଗୋଟେ ।

ଇ.ଅ : କଡ଼େଇ କାହିଁ ?

ପୋ.ଇ : ସୁମନ୍ତବାବୁ । କଡ଼େଇ କାହିଁ ?

ସୁମନ୍ତ : ବାଡ଼ି ପଟରେ ଅଛି ।

ଇ.ଅ : ଆଉ କ'ଣ ରହିଲା ?

ପୋ.ଇ : ନା, ଆଉ କିଛି ନାହିଁ ।

ଇ.ଅ : ଆପଣ ଏଇଠି ଗୋଟେ ଦସ୍ତଖତ କରନ୍ତୁ ।

ହରିଆ : କାହିଁକି ବାବୁ ?

ପୋ.ଇ : କାହିଁକି କ'ଣ ? ତୋ ଆଗରେ ଖାନତଲାସ ହେଲା । ତୋ ଘରୁ ଯାହା ସବୁ ବାହାରିଲା ଆମେ ସେସବୁ ତାଲିକା କରିଛୁ । ଏକଥା ସତ ବୋଲି ତୁ ଜାଣିଲୁ । ଏଇଠି ଗୋଟେ ଦସ୍ତଖତ କରିଦେ ।

ହରିଆ : ମୁଁ ମୂରୁଖ ଲୋକ ନେଖା ପଢ଼ା ଜାଣିନେଇଁ ।

ଇ.ଅ : ଟିପ ମଡ଼େଇ ଦେଲେ ଚଳିବ । ଦେଖା ତମ ବାଆଁ ହାତ ବୁଢ଼ା ଆଙ୍ଗୁଠି । (ହରିଆ ତା ବୁଢ଼ା ଆଙ୍ଗୁଳି ଦେଖାଇଲା, ଗୋଟିଏ କାଳି ପ୍ୟାଡରେ ତା ବୁଢ଼ା ଆଙ୍ଗୁଠିକୁ ବୁଡ଼ାଇ ସିଜର ଲିଷ୍ଟ ଉପରେ ଛାପ ନେଲେ ।)

ପୋ.ଇ : ସୁମନ୍ତବାବୁ ! ଆପଣ ଏଥର ଆସନ୍ତୁ । (ସୁମନ୍ତ ପାଖେଇ ଆସିଲା)

ଇ.ଅ : ଆପଣ ଏଇଠି ଗୋଟେ ଦସ୍ତଖତ କରନ୍ତୁ ।

ସୁମନ୍ତ : କୋଉଠି ? ଏଇଠି କରିବି ?

ଇ.ଅ : ହଁ, ସେଇଠି । (ସୁମନ୍ତ ସିଜର ଲିଷ୍ଟ ଉପରେ ସ୍ୱାକ୍ଷର କଲେ ।)

ପୋ.ଇ : ଆଉ ଦୁଇ ଜଣ ସାକ୍ଷୀ ଦରକାର । ସୁମନ୍ତବାବୁ ! ଆଉ ଦୁଇଜଣ ଲୋକଙ୍କୁ ଡାକନ୍ତୁ ।

ସୁମନ୍ତ : ଡାକୁଚି ସାର୍ । (ଟିକେ ଆଗେଇ ଯାଇ) ରାଧୁଆ ! ରାଧୁଆ ।
(ରାଧୁଆ ଓ ମାଧିଆ ଦୁହେଁ ଏକ ସଙ୍ଗରେ ଚାଲି ଆସିଲେ)

ରାଧୁଆ : ଆମକୁ ଡାକିଲ ? (ପ୍ରବେଶ)

ପାହାଡ଼ : (ବାଡ଼ିଧରି ଗୋଡ଼େଇ ଆସିଲା) କିରେ ତମେ ଦିଇଟା ପୁଣି କୁଆଡ଼େ ? ଯାଉଚନା । (ରାଧୁଆ ଓ ମାଧିଆ ଡରିଯାଇ ଫେରିଯାଉଥିଲେ କିନ୍ତୁ ଇନକମ୍‌ଟ୍ୟାକ୍ସ ଅଫିସର, ସେ ଦୁହିଁଙ୍କୁ ଡାକିଲେ ।)

ଇ.ଅ : ଶୁଣ, ତମେ ଦୁଇଜଣ ଯାକ ଏଠିକି ଆସ ।

ମାଧିଆ : (ଅଟକି ଯାଇ) ମତେ ଡାକିଲେ ଆଜ୍ଞା ?

ଇ.ଅ : ହଁ, ତମ ଦୁଇଜଣଯାକୁ ଡାକିଲି । ଆସ, ଏଇଠିକି ମୋ ପାଖକୁ ଆସ । (ମାଧିଆ ଓ ରାଧୁଆ ଦୁହେଁ ଡରି ଡରି ଗଲେ ।)

ରାଧୁଆ : କାଇଁକି ଡାକିଲେ ସାର୍ ?

ଇ.ଅ : ଏଇ ତାଲିକା ତଳେ ତମେ ଦୁଇଜଣ ସାକ୍ଷୀ ଭାବରେ ଦସ୍ତଖତ କର ।

ମାଧିଆ : ସାକ୍ଷୀ କ'ଣ ସାର୍ ?

ପୋ.ଇ ସାକ୍ଷୀ କ'ଣ ତମେ ଜାଣିନା ?

ରାଧୁଆ : ନାଇଁ ଆଜ୍ଞା ।

ପୋ.ଇ : ତମେ କେବେ କାହାର ସାକ୍ଷୀ ହେଇନା ?

ଇ.ଅ : ମୁଁ ତୁମକୁ କଥାଟା ବୁଝେଇ ଦଉଚି ଶୁଣ । ଏଇ ହରିଆ ଘରୁ ଯାହା ଯାହା ବାହାରିଲା ଆମେ ତାର ଗୋଟେ ତାଲିକା କରିଚୁ । ଏଇ ତାଲିକାଟା ଠିକ୍ ବୋଲି ହରିଆ ତା ତଳେ ଟିପ ଚିହ୍ନ ଦେଇଚି । ଏଇ ଟିପ ଚିହ୍ନ ହରିନାୟକର ବୋଲି ତମେ ଦିଇ ଜଣ ସାକ୍ଷୀ ପଡ଼ିବ । ତମକୁ ଦସ୍ତଖତ କରି ଆସେତ ?

ରାଧୁଆ : ଅସେ ଆଜ୍ଞା ।

ପୋ.ଇ : ଆଉ ତମକୁ ?

ମାଧିଆ : ଆସେ ।

ଇ.ଅ : ତା ହେଲେ ଦି'ଇ ଜଣଯାକ ଏଇଠି ଦସ୍ତକତ କରିଦିଅ । ହଁ, ଏଇଠି । କଲମ ଧର । (ରାଧୁଆ ଓ ମାଧିଆ ଦୁହେଁ ସ୍ୱାକ୍ଷର କରି ଦେଲେ ।)

ପୋ.ଇ : ଏଥର ତମେ ଯାଅ । (ରାଧୁଆ ଓ ମାଧିଆଙ୍କର ପ୍ରସ୍ଥାନ ।)
ସୁମନ୍ତ : ମୁଁ ଏଥର ଯାଉଚି ?
ଇ.ଅ : ଆପଣ ଏମିତି ଚାଲିଯିବେ କୁଆଡ଼େ ? ହରିଆ ଘରୁ ଏଇ ଯେତେସବୁ ଜିନିଷ ବାହାରିଲା ଏସବୁ ଆମେ ସିଜର ଲିଷ୍ଟରେ ଚଢ଼ାଇଛୁ । ଏସବୁ ଆପଣଙ୍କ ଜିମା ରହିଲା । ଏ ମାମଲା ଫଇସଲା ନହେବା ପର୍ଯ୍ୟନ୍ତ ଏସବୁ ଆପଣଙ୍କ ଦାୟିତ୍ୱରେ ରଖିବେ ।
ସୁମନ୍ତ : ଆଜ୍ଞା ।
ହରିଆ : ମୋ ଜିନିଷ ସିଏ ନେଲେ, ମୁଁ କେମିତି ଚଳିବି ବାବୁ ?
ଇ.ଅ : କେଶ୍ ଫାଇନାଲ୍ ହୋଇ ଗଲେ, ତମ ଜିନିଷ ତମକୁ ଫେରାଇ ଦିଆଯିବ ।
ହରିଆ : ଏତେଦିନ ଯାଏଁ ମୁଁ କେମିତି ଚଳିବି ?
ଇ.ଅ : ସରକାରୀ ନିୟମ ଯାହା ନା ଆମେ କ'ଣ କରିବୁ ?
ପୋ.ଇ : ସମରବାବୁ । ଆମେ ଆଉ ଗୋଟେ ଜିନିଷ ଛାଡ଼ିଗଲେ ।
ଇ.ଅ : କି ଜିନିଷ ?
ପୋ.ଇ : ଏଇ କିଛି ସମୟ ଆଗରୁ ଏ ଲୋକଟା ପଖାଳ ହାଣ୍ଡି ପାଇଁ ଜିଦ୍ କରୁଥିଲା । ଯଦି ସେ ହାଣ୍ଡି ଭିତରେ ......
ଇ.ଅ : ହଁ, କିଛି ଅସମ୍ଭବ ନୁହଁ । ହୁଏତ ତା ଭିତରେ କିଛି ମୂଲ୍ୟବାନ ହୀରା କିମ୍ୱା ସୁନା ରଖିଥାଇ ପାରେ ।
ହରିଆ : ନାଇଁ ହଜୁର ତା ଭିତରେ କିଛି ନାହିଁ, ଖାଲି ପଖାଳ ଆଉ ଖଟା ତୋରାଣି ।
ପୋ.ଇ : ତୁ ଚୁପ୍ କର । ପାହାଡ଼ ସିଂ ।
ପାହାଡ଼ : ସାର୍ ।
ପୋ.ଇ : ଘର ଭିତରୁ ଭାତ ହାଣ୍ଡିଟା ନେଇ ଆସ୍ ।
ପାହାଡ଼ : ସାର୍ । (ଘର ଭିତରକୁ ପ୍ରବେଶ କଲା)
ରମା : ବୋଉ ! ବେଲାଟା ଦେ, ମୁଁ ଭାତ ଖାଇବି ।
ବିମଳି : ରହ, ସିଏ ଆଗ ଆଣନ୍ତୁ ।
ରମା : ନାଇଁ, ତୁ ମତେ ବେଲାଟା ଦେ ।
ବିମଳି ବେଲା କ'ଣ ପଦାରେ ଅଛି ? ସବୁ ତ ସେଇ ଘର ଭିତରେ । ସିଏ ଭାତ ହାଣ୍ଡିଟା ଆଣି ସାରନ୍ତୁ । ମୁଁ ଯାଇ ବେଲା ଆଣିବି ।

ରମା : ନାଇଁ ମୁଁ ଯାଉଚି ବେଲା ଆଣିବି । (ରମା ଘର ଭିତରକୁ ପଶିଗଲା ବେଳେ ପୋଲିସ ଇନିସ୍‌ପେକ୍ଟର ବାଡ଼ି ଦେଖାଇ ଅଟକାଇଲେ ।)

ପୋ.ଇ : ତୁ ସିଆଡ଼େ କୁଆଡ଼େ ଯାଉଚୁ ?

ରମା : ଘର ଭିତରୁ ବେଲା ଆଣିବି ।

ପୋ.ଇ : ରହ, ସିଏ ଭାତ ହାଣ୍ଡିଟା ଆଣିସାରୁ, ତୁ ଯିବୁ ।
(ରମା ଅଟକିଗଲା । ପାହାଡ଼ ସିଂ ଭାତ ହାଣ୍ଡି ଧରି ବାହାରକୁ ବାହାରି ଆସିଲା । ରମା ଘର ଭିତରକୁ ପଶିଗଲା ।)

ଇ.ଅ : ସେଇଠି ଥୋ ।

ପୋ.ଇ : ହାତ ପୂରାଇ ଦେଖିଲୁ ଭାତ ଭିତରେ କ'ଣ ଅଛି ?
(ପାହାଡ଼ ସିଂ ଭାତ ହାଣ୍ଡି ଭିତରେ ହାତ ପୂରାଇ ଘାଣ୍ଟିଚି ।)

ହରିଆ : ଭାତ ଆଉ ତୋରାଣି ଛଡ଼ା ଆଉ ତା ଭିତରେ କିଛି ନାହିଁ ।

ବିମଳି : ତାକୁ ହାତ ପୂରେଇ ସେମିତି ଘଣ୍ଟାଘଣ୍ଟି କରନା ମୋ ଝିଅ ଖାଇବ । ଭୋକରେ ତା ହଂସା ଉଡ଼ିଗଲାଣି ।
(ରମା ଏଇ ସମୟରେ ବେଲାଟାଏ ଧରି ଘର ଭିତରୁ ବାହାରି ଆସିଲା ।)

ରମା : ଦିଅ, ମତେ ଏଇଥିରେ ଭାତ ଦିଅ । ଭାରି ଭୋକ ହେଲାଣି ।

ଇ.ଅ : ପାହାଡ଼ ସିଂ ତା ଭିତରୁ କିଛି ମିଳିଲା ?

ପାହାଡ଼ : ନାଇଁ ସାର୍ । କିଛି ନାହିଁ ।

ପୋ.ଇ : ସେମିତି ହାତ ପୂରାଇଲେ କିଛି ମିଳିବ ନାହିଁ । ଭାତ ହାଣ୍ଡିଟା ତଳେ ଢ଼ାଳି ଦେଇ ହାତରେ ଗୋଟି ଗୋଟିକି ଖେଳେଇ ଦେ । ଯାହା ଥିବ ଜଣା ପଡ଼ିଯିବ ।

ବିମଳି : ତମକୁ ନେହୁରା ହଉଚି ବାବୁ ! ତମ ଗୋଡ଼ ଧରୁଚି । ମୋ ଝିଅ ଭୋକରେ ଛଟପଟ ହଉଚି, ଭାତ ତକ ତଳେ ଢ଼ାଳି ଦିଅନା ।

ରମା : ମତେ ଗଣ୍ଡେ ଭାତ ଦିଅ । ମତେ ଭାରି ଭୋକ ହେଲାଣି ।

ଇ.ଅ : ପାହାଡ଼ ସିଂ !

ହରିଆ : ନାଇଁ ବାବୁ, ତା ଭିତରେ କିଛି ନାହିଁ । ତଳେ ଢାଳନା ବାବୁ । ମୋ ଝିଅକୁ ଟିକେ ଦୟାକର । ଝିଅଟା ଭୋକରେ ଅଲିଭି ପଡ଼ିଲାଣି ।

ପୋ.ଇ : (ଚିତ୍କାର କରି) ପାହାଡ଼ ସିଂ ।

ପାହାଡ଼ : ସାର୍ ।

ପୋ.ଇ : ଚାହିଁଚୁ କ'ଣ ? ଭାତ ହାଣ୍ଡିଟା ତଳେ ଢାଳି ଦେ ।

ପାହାଡ଼ : ଢାଳୁଚି ସାର୍ । (ଭାତ ହାଣ୍ଡିଟା ଢାଳିଲା)

ହରିଆ
ବିମଳି : } ଏ କ'ଣ କରୁଚ ବାବୁ । ଢାଳନା ବାବୁ, ଢାଳନା । ବାବୁ ! ବାବୁ !
(ଦୁହେଁ କାନ୍ଦି ଉଠିଲେ)

ପୋ.ଇ : ତଳେ ଘାଣ୍ଟି ଦେ ।
(ପାହାଡ଼ ସିଂ ଭାତ ହାଣ୍ଡିଟାକୁ ତଳେ ଢ଼ାଳି ଦେଇ ଘାଣ୍ଟିଲା)

ଇ.ଅ : କ'ଣ କିଛି ମିଳିଲା ?

ପାହାଡ଼ : ନାଇଁ ସାର୍ । କିଛି ନାହିଁ । ଖାଲି ପଖାଳ ଭାତ ।

ବିମଳି : କ'ଣ ପାଇଲ ବାବୁ, ଭାତତକ ତଳେ ପଡ଼ି ମାଟି ସାଲୁବାଲୁ ହେଇଗଲା । ମୋ ଛୁଆଟା ଏବେ କ'ଣ ଖାଇବ ?

ରମା : ବୋଉ ! (କାନ୍ଦି ଉଠିଲା)(ବିମଳି ରମାକୁ କୋଳେଇ ନେଲା ।)

ହରିଆ : (ଖୁବ୍ ରାଗିଯାଇ ଗୋଟେ ଠେଙ୍ଗା ବୁଲାଇ ଗର୍ଜନ କଲା) ନାଇଁ, ମୁଁ କାହାରିକି ଛାଡ଼ିବି ନାହିଁ । ମୋ ବାରି ଖୋଳିଲ, ମୋ ଘର ଖୋଳିଲ, ମୁଁ କିଛି କହିଲି ନେଇଁ । ମୋ ଜିନିଷପତ୍ର ଚିରି ଭିଣିଭିଣା କରି ନଷ୍ଟ କରି ଦେଲ - ମୁଁ ଚୁପ୍ ରହିଲି । ଶେଷରେ ମୋ ଖାଇବା ଦାନାରେ ତମେ ଧୂଳି ପକେଇଲ, ପଖାଳ ହାଣ୍ଡିଟା ତଳେ ଢ଼ାଳି ମାଟିସାଲୁବାଲୁ କରିଦେଲ । ମୋ ଛୁଆଟା ଭୋକରେ ଛଟପଟ ହଉଚି । ନା, ନା ମୁଁ କାହାରିକି ଛାଡ଼ିବି ନେଇଁ । ସମସ୍ତଙ୍କୁ ବାଡ଼େଇ ଛତୁ କରିଦେବି ।

ଇ.ଅ : ଆରେ ହରି ଇଏ କ'ଣ ହଉଚି ?

ପୋ.ଇ : କିରେ ହରିଆ । ଇଏ କ'ଣ ହଉଚି ? ତୋ ଘର ଚାରିପଟେ ପୋଲିସ ଘେରିଚନ୍ତି । ଟିକେ ଇସରା ଦେଲେ ତତେ ଗୁଳିକରି ଉଡ଼େଇ ଦେବେ ।

ହରିଆ : ରଖ ତମ ପୁଲିସି ଆଉ ଗୁଳି । ଏମିତି ପୁଲିସି ମୁଁ ଢେର ଦେଖିଚି । କୋଉ ପୁଲିସି ଆସୁଚି ଆସୁ । ଗୋଟି ଗୋଟିକି ଠେଙ୍ଗାରେ ପିଟିକି ତଳେ ପକେଇ ଦେବି ।

ପୋ.ଇ : ପାହାଡ଼ ସିଂ ! କର୍ଣ୍ଣାର ସିଂ ! (ପାହାଡ଼ ଓ କର୍ଣ୍ଣାର ଦୁଇଟା ବନ୍ଧୁକ ଆଣି ମଞ୍ଚ ଉପରକୁ ଆସିଲେ ।)

ପୋ.ଇ : ହରିଆ ପାଗଳ ହେଇ ଯାଇଚି । ତା ପିର ମୁଣ୍ଡକୁ ଉଠି ଯାଇଛି । ତାକୁ ଆରେଷ୍ଟ କର ।

ପାହାଡ଼ }
କର୍ଣ୍ଣାର : } ସାର୍ ।

ବିମଳି : ପୁଲିସିଙ୍କ ପାଖକୁ ତମେ ଯାଆନା । ସେମାନଙ୍କ ହାତରେ ବନ୍ଧୁକ ।

ହରିଆ : ମୁଁ ବନ୍ଧୁକ ଫନ୍ଧୁକ କିଛି ମାନିବି ନେଇଁ ।

ଇ.ଅ : ହରି ଇଏ କ'ଣ ହଉଚି ? ତୁ ହୋସ୍‌ରେ ଅଛୁତ ?

ହରିଆ : ମୁଁ ଠିକ୍ ହୋସ୍‌ରେ ଅଛି । ଶଳା ଗୋଟେ ନବରଙ୍ଗ ନଗେଇଚନ୍ତି । ମତେ ଆଉ ମୋ ପିଲା ମାଇପଙ୍କୁ ଆଣି ଦାଣ୍ଡରେ ଠିଆ କରାଇ ଦେଇ । ମୁଁ  କାହାରିକି ଛାଡ଼ିବି ନେଇଁ । (ଠେଙ୍ଗାଟାକୁ ଟେକି ପିଟି) ଆସ, କିଏ ଆସୁଚ ଆସ ।

ସୁମନ୍ତ : ହରିଆର ମୁଣ୍ଡ ଖରାପ ହେଇଗଲାଣି ଆଜ୍ଞା । ନହେଲେ ସାମାନ୍ୟ ବାଉଁଶ ଠେଙ୍ଗାଟାଏ ଧରି ସିଏ ବନ୍ଧୁକ ଆଗକୁ ମରିବାକୁ ଯାଆନ୍ତା ?

ହରିଆ : ହଁ, ମୁଁ ମରିବି । କିନ୍ତୁ ମୁଁ ମରିବା ଆଗରୁ ତମ ସମସ୍ତଙ୍କୁ ଗୋଟି ଗୋଟିକି ମାରିବି ।

ବିମଳି : (କାନ୍ଦିକାନ୍ଦି) ତମେ ସେ ପୁଲିସି ଆଗକୁ ଯାଆନା । ମୋ ଘର ବୁଡ଼ି ଉଚ୍ଛନ୍ନ ହେଇଯିବ । ମୋ ସଂସାର ଭାସିଯିବ । ମୋ ଛୁଆଟା ଛେଉଣ୍ଡ ହେଇଯିବ ।

ରମା : ବାପା ! (କାନ୍ଦିକାନ୍ଦି) ତମେ ପଳେଇ ଆସ ବାପା । ନହେଲେ ଏମାନେ ତୁମକୁ ମାରି ପକେଇବେ ।

(ଏଇ ସମୟରେ ପୋଲିସ ଇନିସ୍‌ପେକ୍ଟର ଉପରକୁ ତାଙ୍କ ରିଭଲ୍‌ଭରରୁ ଫାଙ୍କା ଗୁଳି ଚଳାଇଲେ । ହରିଆ ଗୁଳି ଶବ୍ଦରେ ଚମକି ପଡ଼ିଲାବେଳେ ତା ହାତରୁ ବାଡ଼ି ଖସି ପଡ଼ିଲା । ପୋଲିସମାନେ ତାକୁ ଘେରିଯାଇ ଗିରଫ କଲେ ।)

ହରିଆ : ଛାଡ଼, ମତେ ଛାଡ଼ । ଗୁଳି ଫୁଟେଇ, ଲୁଚି ଛପି ପଛରୁ ଆସି ଧରୁଚ । ଦିହରେ ବଳ ଅଛି ଯଦି ବନ୍ଧୁକ ପକେଇ ଦେଇ ମୋ

ଆଗକୁ ଆସ । ଗୋଟି ଗୋଟି ସମସ୍ତଙ୍କ ବେକ ମୋଡ଼ି ରକ୍ତ ପିଇଯିବି । (ଡେଙ୍ଗୌଁଲା ଓ ଗର୍ଜନ କଲା)

ବିମଳି : ତମେ ଟିକେ ହୋସକୁ ଆସ ରମାବାପା ! ନହେଲେ ସେମାନେ ତମକୁ ମାରି ପକେଇବେ । ଆମେ ସବୁ ଭାସିଯିବୁ । ତମେ ଟିକେ ରମା ମୁହଁକୁ ଅନା ।

ରମା : ବାପା ! ବାପା !

ପୋ.ଇ : ପାହାଡ଼ ସିଂ ! ହରିଆ ଅଣ୍ଟାରେ ଗୋଟେ ଦଉଡ଼ି ବାନ୍ଧ । ନହେଲେ ତାକୁ ସମ୍ଭାଳି ହବ ନାହିଁ ।

ପାହାଡ଼ : ସାର୍ । (ହରିଆ ଅଣ୍ଟାରେ ଗୋଟେ ଦଉଡ଼ି ବାନ୍ଧିଲେ । ବିମଳି ଓ ରମା ଜୋରରେ କାନ୍ଦି ଉଠିଲେ ।)

ପୋ.ଇ : ନିଅ, ତାକୁ ଜିପ୍‌କୁ ନେଇ ଯାଅ ।

ବିମଳି : ତାକୁ ଛାଡ଼ି ଦିଅ ବାବୁ । ତାକୁ ଛାଡ଼ି ଦିଅ । ତାକୁ ନେଇଗଲେ ଆମେ ଚଳିବୁ କେମିତି ? ତମ ଗୋଡ଼ତଳେ ପଡୁଚି ତାକୁ ଛାଡ଼ି ଦିଅ । (ଏତିକି ବେଳେ ମଞ୍ଚ ଉପରକୁ ଆସିଲେ ସାମ୍ବାଦିକ ଅଜୟ ଦାସ ।)

ଅଜୟ : ସାର୍ । ମୋ ରିପୋର୍ଟରେ ସାମାନ୍ୟ ଭୁଲ୍ ଥିଲା ।

ଇ.ଅ : ବାଃ, ସାମାନ୍ୟ ଭୁଲ୍ ଥିଲା ? ଆପଣମାନଙ୍କ ପରି କଞ୍ଚା ସାମ୍ବାଦିକମାନଙ୍କ ଯୋଗୁ ଆମେ ବିଭିନ୍ନ କ୍ଷେତ୍ରରେ ଅପଦସ୍ଥ ହେଉଛୁ ।

ଅଜୟ : କେବଳ ଗାଆଁ ଆଉ ଲୋକର ନାଆଁ ଟିକେ ଏପଟ ସେପଟ ହେଇଗଲା । ସେ ଲୋକ ମଦନପୁରର ହରିନାୟକ ନୁହଁ, ହରିପୁରର ମଦନ ନାୟକ ।

ପୋ.ଇ : ଆମେ ତାହେଲେ ଅଯଥାଟାରେ ଏ ନିରୀହ ଲୋକଟାର ଘର ଖାନ୍‌ତଲାସ କଲେ ।

ଇ.ଅ : ଏ କଥାଟାକୁ ଯଦି କିଏ Highlight କରେ ତାହେଲେ ମୁଁ ଆଉ ମୋ Department ପୂରା ବଦ୍‌ନାମ ହେଇଯିବ । ଆମର ଏ ଭୁଲ୍ ଆକ୍‌ସନ୍‌କୁ ଆମେ କେମିତି Justify କରିବୁ ?

ଅଜୟ : କିନ୍ତୁ ଆପଣଙ୍କ ଖାନ୍‌ତଲାସ ଯେ ସଂପୂର୍ଣ୍ଣ ବିଫଳ ହୋଇଛି, ଏ କଥାରେ ମୁଁ ଏକମତ ନୁହଁ ।

ଇ.ଅ : ଆମେ ଗୋଟେ ଭୁଲ୍ ଲୋକର ଘର ଉପରେ ଚଢ଼ାଉ କଲୁ, ଏଇଟା ଠିକ୍ ବୋଲି ଆପଣ କେମିତି କହୁଛନ୍ତି ଅଜୟବାବୁ ?

ପୋ.ଇ : ଆପଣଙ୍କ କଥା ତ ମୁଁ ଆଦୌ ବୁଝି ପାରୁ ନାହିଁ ।

ଅଜୟ : ଆଜିର ଏ ଖାନ୍‌ତଲାସ୍‌ରୁ ହରିନାୟକ ପରି ଲୋକମାନଙ୍କର ଖାଲିହାତର ସ୍ପଷ୍ଟ ଚିତ୍ରଟିଏ ମିଳିଗଲା । ଏଇ ଖାଲିହାତର ମଣିଷମାନେ ସୁସ୍ଥ ଗଣତନ୍ତ୍ର ପ୍ରତି ବିପଦର କାରଣ ।

ଇ.ଅ : ଆପଣ କଥାଟାକୁ ଆଉ ଟିକେ ସ୍ପଷ୍ଟ କରନ୍ତୁ ।

ଅଜୟ : ଏଇ ହରିନାୟକମାନଙ୍କର ସ୍ୱାଧୀନ ମତବ୍ୟକ୍ତ କରିବାର କିମ୍ବା ସ୍ୱାଧୀନଭାବେ କିଛି ଚିନ୍ତା କରିବାର ଶକ୍ତି ନାହିଁ । ଏମାନେ ପଣ୍ୟ ଦ୍ରବ୍ୟ ପରି ପ୍ରତିଦିନ ଖୋଲା ବଜାରରେ ବିକ୍ରି ହୁଅନ୍ତି । ମଣିଷ ପରି ବଞ୍ଚିବା ପାଇଁ ଏମାନଙ୍କ ହାତରେ ନିମ୍ନତମ ଆବଶ୍ୟକ ପଦାର୍ଥମାନ ନାହିଁ । ଏମାନେ ନିଜ ମଥାରେ ନାହିଁ ନାହିଁର ସିନ୍ଦୂର ଟୋପା ମାରି ଦୁଆର ଦୁଆର ନାଚ କରନ୍ତି । ପେଟ ଦେଖାଇ ବିକଳ ହୁଅନ୍ତି । ଏମାନେ ସୁସ୍ଥ ଗଣତନ୍ତ୍ର ପ୍ରତି ବିପଦ ।

ପୋ.ଇ : କିନ୍ତୁ ଏମାନଙ୍କ ଘର ଖାନତଲାସ କରି ଲାଭ କ'ଣ ?

ଅଜୟ ସେଇ ଖାଲିହାତର ମଣିଷ ହରିନାୟକମାନଙ୍କୁ ଚିହ୍ନଟ କରିବା ଦିଗରେ ଆଜିର ଏ ଖାନତଲାସ ପ୍ରଥମ ପଦକ୍ଷେପ । ସେଇମାନଙ୍କୁ ଚିହ୍ନଟ କରି ସେଇ ଖାଲିହାତର ମଣିଷମାନଙ୍କ ଅବସ୍ଥାର କିପରି ଅଗ୍ରାଧିକାର ଭିତ୍ତିରେ ଉନ୍ନତି କରାଯାଇ ପାରିବ ତାର ଏକ ବିସ୍ତୃତ ଯୋଜନା ପ୍ରସ୍ତୁତ କରି ଆପଣ ସରକାରଙ୍କୁ ଦିଅନ୍ତୁ ।

ଇ.ଅ : ଅବଶ୍ୟ ଇଏ ଏକ ଉତ୍ତମ ପ୍ରସ୍ତାବ । ମୁଁ ଏ ଦିଗରେ ନିଶ୍ଚୟ ପଦକ୍ଷେପ ନେବି । ମୁଁ କିନ୍ତୁ ଆପଣଙ୍କୁ ଆଉ ଗୋଟେ ଅନୁରୋଧ କରିବି ।

ଅଜୟ : କି ଅନୁରୋଧ !

ଇ.ଅ : ଆଜିର ସଂବାଦପତ୍ର ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ । ଏଇ ହରିନାୟକମାନଙ୍କ ଅବସ୍ଥାର ଉନ୍ନତି ନିମନ୍ତେ ଆପଣ ସଂବାଦପତ୍ର ଜରିଆରେ ଜନଜାଗରଣ ସୃଷ୍ଟି କରନ୍ତୁ ।

ଅଜୟ : ଆପଣ ଠିକ୍ କହିଛନ୍ତି ସାର୍ । ସରକାର ଓ ଲୋକମାନଙ୍କର ଦୃଷ୍ଟି

ଭଙ୍ଗୀରେ ପରିବର୍ତ୍ତନ ଆସିଲେ ହରିନାୟକମାନଙ୍କର ଅବସ୍ଥାର ଉନ୍ନତି ନିଶ୍ଚୟ ଘଟିବ ।

ଇ.ଅ : ଅଭିଜିତ ବାବୁ ! ହରି ନାୟକକୁ ବନ୍ଧନମୁକ୍ତ କରିବାକୁ ଆଦେଶ ଦିଅନ୍ତୁ । ବିଚାରାର କିଛି ଦୋଷ ନାହିଁ, ଅଯଥାଟାରେ ଅନେକ କଷ୍ଟ ପାଇଲା !

ପୋ.ଇ : ପାହାଡ଼ ସିଂ । କର୍ତ୍ତାର ସିଂ ।

ପାହାଡ଼ }<br>
କର୍ତ୍ତାର : } ସାର୍ ।

ପୋ.ଇ : ହରିଆକୁ ଫିଟାଇ ଦିଅ । (ପାହାଡ଼ ସିଂ ଓ କର୍ତ୍ତାର ସିଂ ସଙ୍ଗେ ସଙ୍ଗେ ହରି ନାୟକର ବନ୍ଧନ ଫିଟାଇ ଦେଲେ । ବିମଳି ଓ ରମା କାନ୍ଦି କାନ୍ଦି ହରିଆକୁ କୁଣ୍ଢାଇ ପକାଇଲେ ।)

ଇ.ଅ : ହରି ! ଆମେ ଦୁଃଖିତ, ଗୋଟେ ଭୁଲ୍ ରିପୋର୍ଟ ଉପରେ ଏତେ କଥା ହେଇଗଲା । ହଉ, ଏବେ ଯିବା ଚାଲନ୍ତୁ ଅଭିଜିତ ବାବୁ !

ହରିଆ : (କେବଳ କାନ୍ଦିଲା)

ଇ.ଅ : ତମେ ବ୍ୟସ୍ତ ହୁଅନା । ଆମେ ସରକାରଙ୍କୁ କହି ତମ ପାଇଁ କିଛି ଟଙ୍କା ପଇସା ସାହାଯ୍ୟର ବ୍ୟବସ୍ଥା କରିବୁ ।

ପୋ.ଇ : ଚାଲନ୍ତୁ ଯିବା ସମରବାବୁ !

ଇ.ଅ : ଚାଲନ୍ତୁ । (ଇନ୍‌କମ୍‌ଟ୍ୟାକ୍ସ ଅଫିସର, ପୋଲିସ ଇନିସ୍‌ପେକ୍ଟର, ସାଂବାଦିକ, ସୁମନ୍ତ, ପାହାଡ଼ ସିଂ ଓ କର୍ତ୍ତାର ସିଂ ସମସ୍ତେ ମଞ୍ଚ ଉପରୁ ଚାଲିଗଲେ । ହରିଆ, ବିମଳି ଓ ରମା ମଞ୍ଚ ଉପରେ ଇତସ୍ତତଃ ହୋଇ ପଡ଼ିଥିବା ଜିନିଷ ସବୁକୁ ଗୋଟାଇ ସାରି ଘର ଭିତରକୁ ପଶିବା ବେଳେ ଘରଟା ଭାଙ୍ଗି ପଡ଼ିଲା ।)

ହରିଆ : ମୋ ଘର ଭାଙ୍ଗିଗଲା, ମୋ ଘର ଭାଙ୍ଗିଗଲା । (ଖୁବ୍ ଜୋର୍‌ରେ କାନ୍ଦି ଉଠିଲା ।)

ବିମଳି : (କାନ୍ଦିକାନ୍ଦି) ଆମ ଘର ଭାଙ୍ଗିଗଲା, ଆମେ ରହିବା କୋଉଠି ? ସେମାନଙ୍କୁ ଯାଇ କୁହ, ସେମାନେ ଆମ ଘର ଭାଙ୍ଗିଛନ୍ତି, ତୋଳେଇ ଦିଅନ୍ତୁ ।

ରମା : ବାପା ! (କାନ୍ଦିକାନ୍ଦି) ସେମାନେ ମଟର ଚଢ଼ି ପଳେଇଲେ ବାପା ! ସେମାନଙ୍କୁ ଡାକ । ସେମାନଙ୍କୁ ଡାକ ।

ହରିଆ : (କାନ୍ଦିକାନ୍ଦି ଡାକ ଛାଡ଼ିଲା) ହେ ବାବୁ ! ହେ ବାବୁ ! ମୋ ଘର

ଭାଙ୍ଗିଗଲା । ମୋ ଘର ତିଆରି କରିଦିଅ ବାବୁ ! ହେ ବାବୁ ।
(କାନ୍ଦିକାନ୍ଦି ଯିବା ବେଳକୁ ମଟର ଛାଡ଼ିବାର ଶବ୍ଦ ହେଲା ।
ହରିଆ ଅଧା ବାଟରେ ଠିଆ ହୋଇ) ହେ ବାବୁ । ହେ ବାବୁ !
(ପୁଣି ମଞ୍ଚ ଉପରକୁ ବ୍ୟସ୍ତ ବିବ୍ରତ ଭାବରେ ଆସି) ସେମାନେ
ମଟର ଚଢ଼ି ପଳେଇଲେ ।

ବିମଳି : (କାନ୍ଦିକାନ୍ଦି) ଆମେ ଏଇନା କ'ଣ କରିବା ।
(ରମାକୁ କୁଣ୍ଢାଇ ଧରି କାନ୍ଦିଲା) ମୋ ଝିଅ କୋଉଠି ରହିବ ?
ଶୀତ, ଖରା, ବରଷାରେ, ଆମେ କୋଉଠି ମୁଣ୍ଡ ଗୁଞ୍ଜିବା ?
(ହରିଆ, ବିମଳି ଓ ରମା ଏକ ସ୍ୱରରେ କାନ୍ଦି ଉଠିଲେ । ସେ
କାନ୍ଦଣାର ସ୍ୱର ସେମାନଙ୍କ ପେଟ ଭିତରୁ ବାହାରୁଥିଲା ।
ସେମାନଙ୍କ ବିକଳ କାନ୍ଦଣା ଅନେକ ସମୟ ଧରି ଲହରାଇ
ଲହରାଇ ଶୁଭୁଥିଲା । କାନ୍ଦିବା ବ୍ୟତୀତ ସେମାନଙ୍କ ପାଖରେ
ଆଉ କିଛି ଉପାୟ ନଥିଲା ।)



# ଯନ୍ତା

## ଚରିତ୍ର ସୂଚୀ

| | | |
|---|---|---|
| ▢ | ମନୋଜ | ବୟସ ୪୦ ବର୍ଷ । ଶିକ୍ଷିତ । |
| ▢ | ମଦନ | ବୟସ ୩୫ ବର୍ଷ । ଅର୍ଦ୍ଧଶିକ୍ଷିତ । |
| ▢ | ନକଡ଼ି | ବୟସ ୪୫ ବର୍ଷ । ଗୁଣିଆ । |
| ▢ | ବାବାଜି | ବୟସ ୫୫ ବର୍ଷ । |
| ▢ | ଦସ୍ୟୁ | ବୟସ ୩୦ ବର୍ଷ । |
| ▢ | ପ୍ରକାଶ | ମନୋଜଙ୍କ ପୁଅ । ବୟସ ଦଶ ବର୍ଷ । |
| ▢ | ଅନୀତା | ମନୋଜଙ୍କ ଝିଅ । ବୟସ ଆଠ ବର୍ଷ । |
| ▢ | ବନାନୀ | ମନୋଜଙ୍କ ସ୍ତ୍ରୀ । ବୟସ ୩୫ ବର୍ଷ । |



ଏହି ନାଟକଟି ଆକାଶବାଣୀ, (ବିଜ୍ଞାପନ ପ୍ରସାରଣ ସେବା) କଟକଙ୍କ ସୌଜନ୍ୟରୁ ୧୯୯୪ ମସିହାରେ ପ୍ରସାରିତ । ଏହାର ବିଭିନ୍ନ ଚରିତ୍ରରେ ଅଭିନୟ କରିଛନ୍ତି :

| | | |
|---|---|---|
| ▢ | ମନୋଜ | ହେମନ୍ତ କୁମାର ଦାସ |
| ▢ | ମଦନ | ସୟଦ୍ ଅବଦୁଲ ଦୟାଲ |
| ▢ | ନକଡ଼ି | ଚିରଂଜୀବି ରାଉତରାୟ |
| ▢ | ବାବାଜି | ନିମାଇଁ ଚରଣ ଜେନା |
| ▢ | ଦସ୍ୟୁ | ଦୀପ୍ତି ରଂଜନ ମହାନ୍ତି |
| ▢ | ପ୍ରକାଶ | କମଳ ନାଥ ସାହୁ |
| ▢ | ଅନୀତା | ପ୍ରିୟଙ୍କା ପ୍ରିୟଦର୍ଶିନୀ ମିଶ୍ର |
| ▢ | ବନାନୀ : | ନର୍ମଦା ଦାସ |
| ▢ | ନିର୍ଦ୍ଦେଶନା : | ସୁହାସ ମହାନ୍ତି |

# ପ୍ରଥମ ଦୃଶ୍ୟ

(ମନୋଜଙ୍କ ଘର । ସମୟ ରାତି ଦୁଇଟା । ଖଟରେ ନିଦରେ ଶୋଇଥିଲେ ମନୋଜ । ତଳେ ଶୋଇଥିଲେ ସ୍ତ୍ରୀ ବନାନୀ, ପୁଅ ପ୍ରକାଶ ଓ ଝିଅ ଅନୀତା । ଘରର ଆଲୁଅ ଲିଭିଥିଲା । କାନ୍ଥ ଘଣ୍ଟାର ଟିକ୍‌ଟିକ୍ ଶବ୍ଦ ସହିତ ରାତିର ସାଇଁ ସାଇଁ ଶବ୍ଦ ଶୁଭୁଥିଲା । ହଠାତ୍ ମନୋଜ ଚିତ୍କାର କଲେ ।)

ମନୋଜ : ଓଃ ! କ'ଣ ଗୋଟେ କାମୁଡ଼ି ଦେଲା । (ବିଛଣାରେ ଉଠି ବସିଲେ, ହାତଟାକୁ ଛାଟିଲେ) ବନାନୀ ! ବନାନୀ ! ଆରେ ଉଠମ ।

ବନାନୀ : (ଧଡ଼ପଡ଼ ହୋଇ ଉଠିଲେ) କ'ଣ ହେଲା ?

ମନୋଜ : ଉଠମ ।

ବନାନୀ : ଏତେ ରାତିରେ କାହିଁକି ଡାକୁଚ ?

ମନୋଜ : ଜଲଦି ଲାଇଟ୍ ସୁଇଚ୍‌ଟା ମାରିଲ ।

ବନାନୀ : କାହିଁକି କ'ଣ ହେଲା ?

ମନୋଜ : ଆରେ ଜଲଦି ସୁଇଚ୍‌ଟା ମାର, ମତେ କ'ଣ ଗୋଟେ କାମୁଡ଼ି ଦେଲା ।

ବନାନୀ : କାମୁଡ଼ି ଦେଲା ? କ'ଣ କାମୁଡ଼ିଲା ?

ମନୋଜ : ସାପଟେ କି କ'ଣ ?

ବନାନୀ ଏଁ ସାପ ! ଇଲୋ ମାଆ ମୁଁ କ'ଣ କରିବି ?

ମନୋଜ : ସୁଇଚ୍‌ଟା ମାର । ଓଃ ଭାରି ପୋଡୁଚି । ମୋ ଦେହ କ'ଣ ହୋଇଯାଉଚି ।

ବନାନୀ : ସୁଇଚ୍‌ତ ମାରିଲିଣି । ଲାଇନ ନାହିଁ ନା କ'ଣ ।

ମନୋଜ : ଲଣ୍ଠନଟା ଲଗା ।

ବନାନୀ : ହେ ମାଆ ମଙ୍ଗଳା । ହେ ଭଗବାନ ।

ମନୋଜ : ଜଲଦି ଆଲୁଅ ଲଗା । ଓଃ ଭାରି କଷ୍ଟ । (ବନାନୀ ଦିଆସିଲି ମାରି ଲଣ୍ଠନ ଲଗାଇଲେ ।)

ବନାନୀ : କାହିଁ କୋଉଠି କାମୁଡ଼ିଛି ଦେଖିବା ।

ମନୋଜ : ଏଇ ବିଶି ଆଙ୍ଗୁଠିକି କାମୁଡ଼ିଚି ।

ଆନଂଦ ଚଂଦ୍ର ପହି

ବନାନୀ : (ଆଙ୍ଗୁଠିକି ଦେଖି) ଏଁ ଏତେ ଜୋର୍‌ରେ କାମୁଡ଼ିଚି ? ଏ ମାଆ ମୁଁ କ'ଣ କରିବି, ଦିଇଟା ଦାନ୍ତ ଚିହ୍ନ ବସିଚି । ସାପଟା କୁଆଡ଼େ ଗଲା ? ଝରକା କବାଟ ସବୁ ବନ୍ଦ୍ । ଏଇ ଘରେ ନିଶ୍ଚେ କୋଉଠି ଅଛି ।

ମନୋଜ : ଖଟ ତଳକୁ ଆଲୁଅ ଦେଖେଇଲ ।

ବନାନୀ : କାଇଁ ? ଖଟ ତଳଟା ପରିଷ୍କାର, କୋଉଠି କିଛି ନାହିଁ ।

ମନୋଜ : ବିଛଣାରେ କୋଉଠି ପଶିଯାଇଥିବ । ପିଲାମାନଙ୍କୁ ନିଦରୁ ଉଠେଇ ବିଛଣାଟା ଝଡ଼ାଝଡ଼ି କରି ଦିଅ ।

ବନାନୀ : (ଭୟ ପାଇଯାଇ) ଏଁ ବିଛଣାରେ ପଶିଥିବ ? ଏମାଆ ମୁଁ କ'ଣ କରିବିଲୋ ? ମୋ ଛୁଆ ଗୁଡ଼ାକ, ହେ ଭଗବାନ । ପ୍ରକାଶ ! ଏ ପ୍ରକାଶ ! ଅନୀତା, ଅନୀତା, ଏ ଅନୀତା । (ପିଲା ଦୁଇଜଣ ନିଦରୁ ଉଠି ପଡ଼ିଲେ)

ପ୍ରକାଶ : କ'ଣ ବୋଉ ?

ଅନୀତା : ଏତେ ରାତିରେ କାଇଁକି ଡାକୁଚୁ, କ'ଣ ହେଲା ?

ବନାନୀ : ବାପାଙ୍କୁ ସାପ .....

ପ୍ରକାଶ }
ଅନୀତା } : ସାପ ? ସାପ କାଇଁ ? କୁଆଡ଼େ ଗଲା ?

ବନାନୀ (ବନାନୀ ବିଛଣା ଝାଡୁ ଝାଡୁ) ତମେ ସବୁ ବିଛଣାରୁ ଉଠ ।

ମନୋଜ : ତମେ ସବୁ ଉଠ, ବୋଉ ବିଛଣା ଝାଡି ଦେଉ । ମତେ କାମୁଡ଼ି ଦେଇ ସାପଟା ଏଇଠି କୋଉଠି ଲୁଚିଚି ।

ବନାନୀ : କାଇଁ, ଏ ବିଛଣାରେ ସାପ କାଇଁ ?

ପ୍ରକାଶ ବାପା ! ସାପ ତମକୁ କୋଉଠିକି କାମୁଡ଼ିଲା ?

ମନୋଜ : ଏଇଠିକି କାମୁଡ଼ିଲା । (ପ୍ରକାଶ ଓ ଅନୀତା ଦୁହେଁ ମନୋଜଙ୍କ ଆଙ୍ଗୁଠିକି ଦେଖିଲେ । ବନାନୀ ଘରର ସବୁଆଡ ଝଡ଼ା, ଝଡ଼ି କରି ସାପକୁ ଖୋଜିଲେ ।)

ଅନୀତା : କେଡ଼େ ସାପଟେ ?

ମନୋଜ : ମୁଁ କ'ଣ ଦେଖିଚି ? ମୁଁ ଶୋଇଥିଲି, ଅନ୍ଧାରରେ କାମୁଡ଼ି ଦେଇ କୁଆଡ଼େ ପଳେଇଲା ।

ବନାନୀ : ବିଛଣା ଝାଡ଼ିଲି, ଆଇଣା ସନ୍ଧି, ଖଟତଳ, ସବୁ ଦେଖିଲି, ସାପ କାଇଁ ?

ମନୋଜ : ମୋ ଦେହ କ'ଣ ହେଇ ଯାଉଚି ।

ବନାନୀ : ଏଁ ଦିହ କ'ଣ ହେଇଯାଉଚି ? କ'ଣ ହଉଚି ?
ମନୋଜ : ମୁଁ ଜାଣି ପାରୁ ନେଇଁ ।
ବନାନୀ : ମୁଣ୍ଡ ?
ମନୋଜ : ମୁଣ୍ଡ ? ହଁ, ମୁଣ୍ଡଟାବି କେମିତି କେମିତି ଗୋଟେ ଲାଗୁଚି ।
ବନାନୀ : କେମିତି ଲାଗୁଚି ?
ମନୋଜ : କେମିତି ଲାଗୁଚି ମୁଁ କହି ପାରିବି ନେଇଁ, କିନ୍ତୁ ମୁଣ୍ଡଟା ଭଲ ଲାଗୁନେଇଁ ।
ବନାନୀ : ଆଉ ସେଇ କାମୁଡ଼ି ଥିବା ଜାଗାଟା କେମିତି ଲାଗୁଚି ?
ମନୋଜ : ସେ ଜାଗାଟା ପୋଡୁଚି ।
ବନାନୀ ପ୍ରକାଶ ! ତୁ ଟିକେ ଯାଇଁକି ମଦନଦାଦାଙ୍କୁ ଡାକ । କହିବୁ ମୋ ବାପାଙ୍କୁ ସାପ କାମୁଡ଼ିଚି ଜଲ୍‌ଦି ଆସ ।
ମନୋଜ ନାଇଁ, ମୁଁ ନିଜେ ଯାଇ ମଦନକୁ ଡାକିବି ।
ବନାନୀ : ତମେ ଯିବ ? ତମେ ଯାଇ ପାରିବ ତ ?
ପ୍ରକାଶ : ନାଇଁ ବାପା ! ତମେ ଥା । ମୁଁ ମଦନଦାଦାଙ୍କୁ ଡାକି ଆଣୁଚି ।
ମନୋଜ : ଜଲ୍‌ଦି ଯା । ତାକୁ କହିବୁ ତା ମଟର ସାଇକେଲ୍‌ଟା ବାହାର କରିବ । ଆମେ ମଧୁପୁର ଡାକ୍ତରଖାନା ଯିବୁ । (ପ୍ରକାଶର ପ୍ରସ୍ଥାନ)
ବନାନୀ ଏତେ ରାତିରେ ମଧୁପୁର ଡାକ୍ତାରଖାନାରେ କିଏ ଥିବ ? ତମେ ବନମାଳୀପୁର ଗୁଣିଆ ପାଖକୁ ଚାଲିଯା । ଆଉ ଗୁଣିଆ ପାଖରେ ଝଡ଼େଇ ଦବ, ବିଷଟିକେ ଝଡ଼ି ଗଲେ ସକାଳେ ଡାକ୍ତରଖାନା ଯିବ ।
ମନୋଜ : ମୋ ଦିହଟା କେମିତି ଝିମିଝିମି ଲାଗୁଚି । ସାପ କାମୁଡ଼ିଲେ ଝିମିଝିମି ଲାଗେଚି ?
ବନାନୀ : ସେ କଥା ଶୁଣିଲାଠୁଁ ମୋ ଗୋଡ଼ ହାତ ଥରୁଛି । ଆମ ଗାଆଁରେ ନିଧି ପଧାନକୁ ସାପ କାମୁଡ଼ିଥିଲା । ମୁଁ ଶୁଣିଚି ସାପ କାମୁଡ଼ିଲେ ପ୍ରଥମେ ଦିହ ଝିମିଝିମି ଲାଗେ । କ'ଣ ବେଶୀ ଜୋର୍‌ରେ ଦେହଟା ଝିମ୍‌ଝିମ୍ ହଉଚି ?
ମନୋଜ : ବେଶି ଜୋର୍‌ରେ କ'ଣ, କମ୍ ଜୋର୍‌ରେ କ'ଣ ? ଝିମିଝିମି ତ ଲାଗୁଚି ।
ବନାନୀ : ହେ ମାଆ ! ମୁଁ କ'ଣ ଏଇଲେ କରିବି । (ଏଇ ସମୟରେ ମଦନ ଆସିଲା । ତା ପଛେ ପଛେ ପ୍ରକାଶ ।)

ମଦନ : ମନୋଜ ଭାଇ ! କୋଉଠି ତମକୁ କ'ଣ କାମୁଡ଼ିଲା ଦେଖିବା ?
ମନୋଜ : ଏଇଠି, ଏଇ ଆଙ୍ଗୁଠିକି ।
ମଦନ : (ଦେଖିଲା) ହଁ, ସାପର ଦିଇଟା ଦାନ୍ତ ଚିହ୍ନ ଅଛି । ଆମେ ଆଉ ଡେରି କରିବା ନାହିଁ । ତମେ ଆସ ମୋ ମଟର ସାଇକେଲ୍ ପଛରେ ବସ ବନମାଳୀ ପୁର ଗୁଣିଆ ପାଖକୁ ଚାଲିଯିବା ।
ମନୋଜ : ହଉ ଚାଲ୍ ।
ବନାନୀ : ତମେ ମଟର ସାଇକେଲ୍‌ରେ ବସି ପାରିବତ ? ତମ ମୁଣ୍ଡ ଘାଏ କ'ଣ ହବ ।
ମଦନ : ସେ କଥା ଠିକ୍ । ବାହାରର ଥଣ୍ଡା ପବନ ବାଜିଲେ ହୁଏତ ବିଷଟା ବେଶୀ ଧରି ପାରେ ।
ପ୍ରକାଶ : ମୁଁ ପଛରେ ବସି ବାପାଙ୍କୁ ଧରିବି ।
ବନାନୀ : ତୁ ଏଡ଼େ ବଚ୍ଚଟେ ପିଲା, ତୁ କ'ଣ ଧରିବୁ ? ମଦନ ତମେ ଟିକେ ଆଉ କାହାକୁ ଡାକ ।
ମନୋଜ : ନାଇଁ, କିଛି ହବନେଇଁ ମୁଁ ବସିକି ପଳେଇବି ।
ମଦନ : କିଛି ହବ ନେଇଁ, ସେ ଗ୍ୟାରେଣ୍ଟି ଦେଇ ହେବ ନାହିଁ । ମଟର ସାଇକେଲ୍ ପଛରେ ତୁମେ ବସିକି ଯିବା ନିରାପଦ ନୁହଁ । ଆଉ ଗୋଟେ କାମ କରିବା ।
ବନାନୀ : କି କାମ ?
ମଦନ : ମନୋଜ ଭାଇ ଘରେ ଥାଆନ୍ତୁ, ମୁଁ ଏକୁଟିଆ ବନମାଳୀପୁର ଯାଇଛି ଗୁଣିଆକୁ ମୋ ମଟର ସାଇକେଲ୍ ପଛରେ ବସାଇ ନେଇ ଆସିବି । ସିଏ ଆସିଲେ ସାଙ୍ଗେ ସାଙ୍ଗେ ଝାଡ଼ିଦେବ । ସବୁ ଠିକ୍ ହେଇଯିବ ।
ବନାନୀ : ହଉ, ତମେ ଯା । ଶୀଘ୍ର ଆସିବ ।
ମଦନ : ମୁଁ ଅଧଘଣ୍ଟେ ଭିତରେ ଫେରି ଆସିବି । (ପ୍ରସ୍ଥାନ)
ବନାନୀ : ଏବେ ତମ ଦିହ କେମିତି ଲାଗୁଚି ?
ମନୋଜ : ଯେମିତି ଝିମିଝିମି ଲାଗୁଥିଲା ସେମିତି ଲାଗୁଚି ।
ବନାନୀ : ଆଗ ଅପେକ୍ଷା ବେଶୀ ଝିମିଝିମି ହେଉଛି କି ?
ମନୋଜ : ନା । ତମେ ଗୋଟେ କାମ କର । ଏଇଠି ଗୋଟେ ସୂତୁଲି ଜୋର କରି ବାନ୍ଧିଦିଅ ଯେମିତି ବିଷ ଆଉ ଉପରକୁ ଯାଇ ନପାରିବ ।
ବନାନୀ : ପ୍ରକାଶ ଆଣିଲୁ ଗୋଟେ ସୂତୁଲୀ ।

ପ୍ରକାଶ : ସୁତୁଲୀ କାହିଁ ?
ଅନୀତା : ବୋଉର ପୁରୁଣା ସାୟାରୁ ଫିତା ବାହାର କରି ଦେବା ।
ବନାନୀ : ହଁ ମାଆ, ସେଇଆ କର । ଯା ଶୀଘ୍ର ଆଣ । (ଅନୀତା ଆର ଘରକୁ ଗଲା)
ପ୍ରକାଶ : ବାପା ! ମୁଁ ଗୋଟେ ସିନେମାରେ ଦେଖିଥିଲି, ସାପ କାମୁଡ଼ିଥିବା ଲୋକ ଶୋଇବା ଖରାପ ।
ମନୋଜ : ହଁ, ମୁଁ ବି ସେକଥା ଜାଣିଛି । ମୁଁ ଆଉ ଶୋଇବି ନାହିଁ ।
ବନାନୀ : ଗାଆଁରେ କାହା ଘରେ ଗଦ କି ଜାରମହୁରା ନଥିବ ?
ମନୋଜ : କାହା ଘରେ ଥିବ କିଏ ଜାଣିଚି ? ସକାଳ ହେଲେ ପଚାରିବା ।
ବନାନୀ : ମୁଣ୍ଡ ଆଉ କିଛି ........
ମନୋଜ : ହଁ ।
ବନାନୀ : ପ୍ରକାଶ । ପାଣି ଢାଳେ ଆଣ । ବାପାଙ୍କ ମୁଣ୍ଡଟା ଧୋଇଦେବା ।
ମନୋଜ : ଏତେ ରାତିରେ ?
ବନାନୀ : ମୁଣ୍ଡରେ ପାଣି ଢାଳି ଥାପୁଡାଇ ଦେଲେ ବିଷ ଝଡ଼ିଯାଏ ବୋଲି ମୁଁ ଶୁଣିଚି । ପ୍ରକାଶ ! ଯା ପାଣି ଆଣ ।
ପ୍ରକାଶ : ଆଣୁଚି (ପ୍ରସ୍ଥାନ)
ଅନୀତା : (ସାୟା ଡୋରୀଟାଏ ଧରି ପ୍ରବେଶ) ନେ ବୋଉ ! (ବନାନୀ ଝିଅ ହାତରୁ ଡୋରୀଟାକୁ ନେଇ ସ୍ୱାମୀଙ୍କ ହାତର କଚ୍‌ଟି ପାଖରେ ଜୋର କରି ବାନ୍ଧିଲେ ।)
ମନୋଜ : ବେଶୀ ଜୋର୍‌ରେ ହେଇଗଲା, ଆଃ କାଟୁଚି । ଆଉ ଟିକେ କୋହଳ କର ।
ବନାନୀ : ୟା ଠୁ କୋହଳ କଲେ ବିଷ ଉପରକୁ ଉଠିଯିବ । ଏତିକି ଟାଣ ଥାଉ ।
ପ୍ରକାଶ : (ପାଣି ଆଣିକି ପ୍ରବେଶ) ନେ ବୋଉ ।
ବନାନୀ : (ବନାନୀ ପାଣି ଢାଳଟା ପ୍ରକାଶ ହାତରୁ ନେଇଁ) ଚାଲ, ସେପଟକୁ ଚାଲ ।
ମନୋଜ : କୋଉ ପଟକୁ ?
ବନାନୀ : ଓଳି ପଟକୁ ଚାଲ, ଏଠି ପାଣି ଢାଳିଲେ ଘରଟା ଓଦାହେବ ।
ମନୋଜ : ହଉ ଚାଲ । (ସମସ୍ତେ ବାହାରକୁ ଗଲେ)



# ଦ୍ୱିତୀୟ ଦୃଶ୍ୟ

(ମନୋଜଙ୍କ ଘର । ସେଇ ରାତି । ଗୁଣିଆ ଆସି ପହଞ୍ଚି ମନୋଜଙ୍କୁ ଦେଖୁଛି । ତା ପାଖରେ ଅଛନ୍ତି ମଦନ, ବନାନୀ, ପ୍ରକାଶ ଓ ଅନୀତା ।)

ନକଡ଼ି : କାଇଁ, କୋଉଠିକି କାମୁଡ଼ିଚି ?

ମନୋଜ : ଏଇ ଆଙ୍ଗୁଠିକି ।

ନକଡ଼ି : ହଁ, ସେମିତି ଦେଖାଅ । ଥାଉ ଟିକେ ଆଲୁଅ ପାଖକୁ ହାତଟା ଆଣିଲ । ରକ୍ତ ବାହାରିଥିଲା ?

ମନୋଜ : ହଁ ।

ନକଡ଼ି : କି ସାପ କାମୁଡ଼ିଚି ?

ମନୋଜ : ମୁଁ ଜାଣି ନେଇଁ ।

ନକଡ଼ି : ସାପଟାକୁ ଦେଖୁଚ ?

ବନାନୀ : ନା । ରାତି ଅନ୍ଧାରରେ ସାପଟା କାମୁଡ଼ି ଦେଇ କୁଆଡ଼େ ଚାଲିଗଲା । ଆମେ କେହି ଦେଖୁ ନାହୁଁ ।

ନକଡ଼ି : ତମ ଦିହ ଏଇଲେ କେମିତି ଲାଗୁଚି ?

ମଦନ : କହୁନା ମନୋଜଭାଇ ! ତମ ଦିହ କେମିତି ନାଗୁଚି କୁହ ।

ମନୋଜ : ଦିହଟା କେମିତି କେମିତି ଗୋଟେ ଲାଗୁଚି ।

ନକଡ଼ି : କ'ଣ ନାଗୁଚି ?

ମନୋଜ : ଦେହଟା ଭିତରେ ଭିତରେ କ'ଣ ହେଇ ଯାଉଚି ।

ନକଡ଼ି : ମୁଣ୍ଡ ଓଜନ ଓଜନ ନାଗୁଚି ?

ମନୋଜ : ନା ।

ନକଡ଼ି : ହାତ, ପାଦ କିଛି ଗୋଦରା ନାଗୁଚି ?

ମନୋଜ : ନା ।

ନକଡ଼ି : ମୁଁ ତମ ହାତକୁ ଚିମୁଟୁଚି, ତମକୁ କାଟୁଚିକି ନାହିଁ କହିବ ।

ମନୋଜ : (ମୁଣ୍ଡ ହଲାଇ ହଁ କହିଲେ)

ନକଡ଼ି : (ମନୋଜର ହାତକୁ ଚିମୁଟିଲା) କାଟୁଚି ?

ମନୋଜ : ଓଃ । କାଟୁଚି, କାଟୁଚି ।

ନକଡ଼ି : ତମ ହାତ ତାହେଲେ ଗୋଦରା ହେଇ ନେଇଁ । ଏଥର ପାଦକୁ

ଚିମୁଟୁଚି । କାଟୁଚି ?

ମନୋଜ : ହଁ, କାଟୁଚି ।

ନକଡ଼ି : ଆଁ କର ।

ମନୋଜ : (ଆଁ କଲେ)

ନକଡ଼ି : ମୁଁ ତମ ପାଟିରେ ଏଇ ଲୁଣ ଚାମଚକ ଦଉଚି । କ'ଣ ଲାଗୁଚି ମତେ କହିବ । (ଲୁଣ ଚାମଚେ ମନୋଜର ପାଟିରେ ଦେଲା)

ମନୋଜ : ଥୁଃ......... ଥୁଃ............ ଭାରି ଲୁଣିଆ ।

ନକଡ଼ି : ଏ ଚିନିତକ ପାଟିରେ ପକା ।

ମନୋଜ : (ଚିନି ଚାମଚେ ନେଇ ପାଟିରେ ପକାଇଲେ)

ନକଡ଼ି : କ'ଣ ଲାଗୁଚି ?

ମନୋଜ : ମିଠା ।

ନକଡ଼ି : ନିଅ ଏ ନିମ୍ବ ପତ୍ର ଦୁଇଟା ଚୋବେଇ ଦିଅ । କ'ଣ ଲାଗୁଚି ?

ମନୋଜ : ଥୁଃ ........ ଭାରି ପିତା । ଥୁଃ.........

ନକଡ଼ି : ନିମ୍ବପତ୍ର ପାଟିରୁ କାଢ଼ିପକା, ପାଣି ନିଅ କୁଳିକର । (ମନୋଜ ଥୁଃ ଥୁଃ କରି ନିମ୍ବପତ୍ର କାଢ଼ି ପକାଇଲେ ଓ ପାଟିରେ ପାଣି ନେଇ କୁଳିକଲେ ।)

ମଦନ : କ'ଣ କିଛି କହୁନା ନକଡ଼ି ଭାଇ ? ବିଷ ଚଢ଼ିଯିବ ଟିକେ ଶୀଘ୍ର ଝାଡି ଦିଅ ।

ନକଡ଼ି : (ମନୋଜର ହାତରେ ବନ୍ଧା ହୋଇଥିବା ଡୋରୀଟା ଖୋଲି ଦେଲା ।) ଝଡ଼ାଝଡ଼ି କିଛି ଦରକାର ନାହିଁ ।

ମଦନ : ଆଉ ତାହେଲେ କ'ଣ ଡାକ୍ତରଖାନା ନବାକୁ ପଡ଼ିବ ?

ବନାନୀ ଟିକେ ଭଲ ଭାବରେ ତାଙ୍କୁ ଦେଖ ।

ନକଡ଼ି : ନା, ତାଙ୍କଠି ବିଷ ନାହିଁ ।

ମନୋଜ : ବିଷ ନାହିଁ ?

ନକଡ଼ି : ସାପଟାକୁ ପରା କେହି ଦେଖିନା ?

ମନୋଜ : ନା ।

ନକଡ଼ି ସାପଟା ତୁମକୁ କେମିତି କାମୁଡ଼ିଲା ?

ମନୋଜ : ମୁଁ ଖଟରେ ଶୋଇଥିଲି । ସାପଟା ମତେ କାମୁଡ଼ି ଦେଇକି ଅନ୍ଧାରରେ କୁଆଡ଼େ ଚାଲିଗଲା ।

ଆନଂଦ ଚଂଦ୍ର ପହି

ନକଡ଼ି : ହାତଟା କୋଉଠି ଥିଲା ?

ମନୋଜ : ହାତଟା ତଳକୁ ଓହଳିଥିଲା ।

ନକଡ଼ି : ତମକୁ ଚୋଟ ମାରିବା ପରି ଲାଗିଲା ନା ଟାଣି ନେଲା ପରି ଲାଗିଲା ?

ମନୋଜ : ଟାଣି ନେଲା ପରି ।

ନକଡ଼ି : ସେଟା ତାହେଲେ ସାପ ନୁହଁ ।

ମନୋଜ : ସାପ ନୁହଁ ?

ମଦନ : ଆଉ ତାହେଲେ କ'ଣ ? ସାପର ଦାନ୍ତ ଚିହ୍ନ ବସିଥିଲା ?

ନକଡ଼ି : ନା, ଏଟା ସାପଦାନ୍ତର ଚିହ୍ନ ନୁହଁ ।

ବନାନୀ : ତାକୁ ତାହେଲେ ସାପ କାମୁଡ଼ି ନାହିଁ । ହେ ଭଗବାନ, ତମେ ଆମର ସାହା, ଭରସା ।

ନକଡ଼ି : ବିଷାକ୍ତ ସାପ କାମୁଡ଼ି ଥିଲେ ଏତେ ବେଳକୁ ତାଙ୍କ ମୁଣ୍ଡକୁ ବିଷ ଚଢ଼ି ଯାଇଥାନ୍ତା, ପାଟିରୁ ଗରଳ ବାହାରୁଥାନ୍ତା, ହାତ, ପାଦ ଗୋଦରା ଲାଗୁଥାନ୍ତା, ଜିଭ ମଧ ଗୋଦରା ହେଇଯାଇଥାନ୍ତା । ମିଠା, ଲୁଣିଆ, ପିତା କିଛି ବାରିପାରୁ ନଥାନ୍ତେ । ମୁଣ୍ଡ ଓଜନ ଲାଗୁଥାନ୍ତା, ଆଖିକୁ ଢାଲ୍‌ଢାଲିଆ ଦିଶୁଥାନ୍ତା ।

ମଦନ : ତାଙ୍କ ଦିହ ଝିମ୍‌ଝିମ୍ କାହିଁକି ଲାଗୁଚି ?

ନକଡ଼ି : କେବଳ ଭୟରେ ।

ମନୋଜ : ଖାଲି ଭୟରେ କ'ଣ ଦେହ ଝିମିଝିମି ହେବ ?

ନକଡ଼ି : ମୁଁ କେତେ ଜାଗାରେ ଦେଖିଛି ବିଷ ନଥିବା ଧଣ୍ଡ କି ଡମଣା ସାପ କାମୁଡ଼ାରେ ମଧ ଲୋକ ମରିଛନ୍ତି । ସେମାନେ ବିଷ ଯୋଗୁ ମରି ନାହାନ୍ତି, ଅତ୍ୟଧିକ ଭୟରେ ହାର୍ଟଫେଲ୍ କରି ମରିଛନ୍ତି ।

ବନାନୀ : ଯାଙ୍କୁ ତାହେଲେ କ'ଣ କାମୁଡ଼ିଛି ?

ନକଡ଼ି : ମୂଷା କି ଚୁଚୁନ୍ଦ୍ରା ।

ମନୋଜ : ମୂଷା କି ଚୁଚୁନ୍ଦ୍ରା ?

ନକଡ଼ି : ହଁ । ତମ ଆଙ୍ଗୁଳିରେ ଯୋଡ଼ ଦାନ୍ତ ଚିହ୍ନ ଦିଇଟା ବସିଛି, ସେଟା ମୂଷାର କି ଚୁଚୁନ୍ଦ୍ରାର ।

ମଦନ : ଆଉ ତାହେଲେ କିଛି ଭୟ ନାହିଁ ?

ନକଡ଼ି : ନା ।

ବନାନୀ : ଏଇନେ ଆଉ କ'ଣ କରିବାକୁ ହବ ?

ନକଡ଼ି : ଆଉ କିଛି କରିବା ଦରକାର ନାହିଁ । ଆଉ କିଛି ହବ ନେଇଁ । ମୁଁ ଏଥର ଯାଉଚି ।

ମଦନ : ଚାଲ ମୁଁ ତୁମକୁ ମଟର ସାଇକେଲ୍‌ରେ ନେଇ ତମ ଘରେ ଛାଡ଼ି ଦେବି ।

ନକଡ଼ି : ହଉ ଚାଲ । (ଆଗପଛ ହୋଇ ମଦନ ଓ ନକଡ଼ି ଚାଲିଗଲେ ।)

ବନାନୀ : ତମେ ଚାଲ, ସେ ଘରକୁ ଚାଲ । ଟିକେ ବିଶ୍ରାମ କର । ସକାଳ ହଉ ଡାକ୍ତରଖାନା ଯାଇ ଟିକେ ଦେଖେଇ ଦବ । (ନୀରବରେ ମନୋଜ ଉଠିଗଲେ ଆର ଘରକୁ । ତାଙ୍କ ପଛେ ପଛେ ବନାନୀ, ପ୍ରକାଶ ଓ ଅନୀତା ଚାଲିଗଲେ ।)



# ତୃତୀୟ ଦୃଶ୍ୟ

(ମନୋଜଙ୍କ ଘର । ସମୟ ତା ପରଦିନ ସକାଳ । ମନୋଜ ନିସ୍ତେଜ ହୋଇ ବସିଛନ୍ତି । କିଛିଚିନ୍ତା କରୁଛନ୍ତି ।)

ବନାନୀ : ଗୁଣିଆତ କହିଲା କିଛି ବିଷ ନାହିଁ । ତମେ ପୁଣି ଏତେ କ'ଣ ଭାବୁଛ ? ତମ ଦିହ କେମିତି ଲାଗୁଚି ?

ମନୋଜ : ଭଲ ଲାଗୁଚି ।

ବନାନୀ : ଦିହତ ଭଲ ଲାଗୁଚି, ଏମିତି ଗୁମ୍ ହେଇ ବସିଚ କାହିଁକି ?

ମନୋଜ : ମୁଁ ଏଇ ମଣିଷ ଜୀବନ କଥା ଭାବୁଥିଲି ।

ବନାନୀ : କାଲି ରାତି ଅନିଦ୍ରା ହେଇଚ, ତମେ ଚାଲିଇ ଟିକେ ଶୋଇ ପଡ଼ିବ ।

ମନୋଜ : ନାଇଁ, ମୋ ଦେହ ବର୍ତ୍ତମାନ ଠିକ୍ ଅଛି । ମୁଁ କେବଳ ଭାବୁଥିଲି ଶହେ ବର୍ଷ ଯାଏ ବଞ୍ଚିବାକୁ ଆଶା କରୁଥିବା ଆମ ସମସ୍ତଙ୍କ କଥା ।

ବନାନୀ : ତୁମ ମୁଣ୍ଡକୁ ଏସବୁ କଥା କାହିଁକି ଢୁକୁଚି ?

ମନୋଜ : ମଣିଷର ଜୀବନ ଆସେ ଗୋଟିଏ ବାଟରେ କିନ୍ତୁ ତାର ମୃତ୍ୟୁ ଆସେ ଅନେକ ବାଟରେ ।

ବନାନୀ : ତମେ ଏମିତି କ'ଣ କହୁଚ ?

ମନୋଜ : ମୁଁ ଯାହା କହୁଚି, ସତ କଥା କହୁଚି । ମୃତ୍ୟୁ ମଣିଷକୁ ଅନେକ ସ୍ଥାନରେ ଅପେକ୍ଷା କରି ରହିଛି ।

ବନାନୀ : ମୁଁ ତୁମ କଥା ଜମା ବୁଝି ପାରୁ ନେଇଁ ।

ମନୋଜ : ଏଥିରେ ନବୁଝିବାର କ'ଣ ରହିଲା ? ସାପକାମୁଡ଼ା, ଭୂମିକମ୍ପ, ନଇବଢ଼ି, ଘରପୋଡ଼ି, ଅନାହାର, ରୋଗ, ଦୁର୍ଘଟଣା, ବିଷଖିଆ, ହତ୍ୟା, ଆତ୍ମହତ୍ୟା ଏମିତି ଅନେକ ବାଟରେ ମୃତ୍ୟୁ ଆସୁଛି । ଭୟଭୀତ ମଣିଷ ଧାଇଁଚି ଆଗେ ଆଗେ, ମୃତ୍ୟୁ ତା ପଛରେ ଗୋଡ଼େଇଚି ।

ବନାନୀ : ଏମିତି ଅଶୁଭ କଥାଗୁଡ଼ାକ ତମେ କାହିଁକି ପାଟିରେ ଧରୁଚ ?

ମନୋଜ : ମତେ କାଲି ଯଦି ମୂଷା ନକାମୁଡ଼ି ସାପ କାମୁଡ଼ି ଥାଆନ୍ତା, ତା ହେଲେ ଅବସ୍ଥା କ'ଣ ହୋଇ ଥାନ୍ତା ତମେ ଭାବି ପାରୁଛ ?

ବନାନୀ : ସେ ସବୁ ବାଜେ କଥା ବନ୍ଦ କର । ସାପ ଫାପ କିଛି ନୁହଁ, ଏ ଘର ସାରା ମୂଷାଭର୍ତ୍ତି । ଦିନ ରାତି ଡ଼ିଆଁ ମାରୁଚନ୍ତି । ମୂଷାମାନଙ୍କୁ ନିପାତ ନକଲେ ଏ ଘରେ ଆଉ ରହିହେବ ନାହିଁ ।

ପ୍ରକାଶ : (ପ୍ରବେଶି) ବାପା ! ବାପାମ !

ମନୋଜ : କ'ଣ ହେଲା ?

ପ୍ରକାଶ : ବଦ୍‌ମାସ୍ ମୂଷା ମୋ ବିଜ୍ଞାନ ବହିରୁ କଣ ପୃଷ୍ଠା କାଟି ଦେଇଚି । ମୋ କ୍ରିକେଟ୍ ବ୍ୟାଟ୍, ଯୋଉଟା ତମେ ମୋ ପାଇଁ କଟକରୁ ଆଣିଥିଲ ସେଟାକୁ ଅଧାଗରିଆ କରି କାଟି ଦେଇଚି ।

ଅନୀତା : ଛାଇଁଲ ବାପା ! ମୋ ପଲିଷ୍ଟର ଜାମାଟାକୁ ନୁହଁ, ପିଠିପଟରୁ ଏଡ଼େ ଏଡ଼େ ବିଇପୂଳା କାଟି ଦେଇଚି । ମୋ କିହଲଗା ସାବୁନଟା ଟିକି ଟିକି କରି କାଟି ଦେଇଚି । ବାପା ! ଏ ବାପା !

ମନୋଜ : ଉଁ ।

ଅନୀତ : ଆଉ ଗୋଟେ ମଜାକଥା ଶୁଣିବ ?

ମନୋଜ : କ'ଣ ?

ଅନୀତା : ମୋର ଯୋଉ ଶିଙ୍ଗ ପାନିଆଁଟା ତମେ ମୁନିସି ମେଲଣରୁ ଆଣିଥିଲ, ସେଟାକୁ ମୂଷା କୁଆଡ଼େ ନେଇକିନେଇଚି । ପାନିଆରେ ସିଏ କଣ ତା ନିଶ କୁଣ୍ଡେଇବ ନା ମୁଣ୍ଡ କୁଣ୍ଡେଇବ ?

ପ୍ରକାଶ : ଚୁପ୍ । ବୋକିଟା । ମୂଷା କ'ଣ ମଣିଷ ହେଇଚି ?

ବନାନୀ : ଏ ଘରେ ମୂଷା ବଡ଼ ଉତ୍‌ପାତ କରୁଚନ୍ତି । ପରିବା ଡ଼ାଲାରୁ ପରିବା ଖାଇ ଯାଉଚନ୍ତି, ଦୁଧ ଡେକ୍‌ଚିର ଘୋଡ଼ଣି ଫିଙ୍ଗି ଦେଇ ଦୁଧ ପିଇ ଯାଉଚନ୍ତି । ଆମ୍ବ, କଦଳୀ, ମିଠା, ପିଠା ଯାହା ରଖିଲେ ଖଣ୍ଡିଆ କରି ଦେଉଚନ୍ତି । ଆରେ ଆମେ ଏତେ କଥା କହୁଚୁ, ତମେ କ'ଣ ବସି ଭାବୁଚ ?

ମନୋଜ : ନାଇଁ, କିଛି ନାହିଁ ।

ବନାନୀ : ମୂଷା ମରା ଔଷଧ ଆଣ, ଅଟାରେ ଗୋଳେଇ ଗୁଳା କରି ଥୋଇଦେବା ଏକା ଦିନକେ ସବୁ ମୂଷା ମରି ଶୋଇବେ ।

ପ୍ରକାଶ : ମୋ ସାଙ୍ଗ ପରେଶ କହୁଥିଲା,-ତାଙ୍କର ମୂଷାମରା ଔଷଧ ଦେଇଥିଲେ । ଏକା ଦିନକେ ୧୦ଟା ମୂଷା ମରିଗଲେ । ମଲା ମୂଷାଗୁଡ଼ାକୁ ତାଙ୍କର ତା ପରଦିନ ସକାଳୁ ଧାଡ଼ି କରି ବାଡ଼ରେ

ଶୁଆଇ ଦେଲେ । ଢାଇମାନେ ଆସି ଗୋଟି ଗୋଟିକି ଟେକି ନେଲେ । ମତେ ପଇସା ଦିଅ ବାପା । ମୂଷାମରା ଔଷଧ ଫକୀର ଦୋକାନରେ ଅଛି, ମୁଁ ନେଇ ଆସିବି ।

ମନୋଜ : ମୂଷାମାନଙ୍କୁ ବିଷ ଦେଇ ମାରିବାଟା କିନ୍ତୁ ନୃଶଂସ କାମ ହେବ ।

ବନାନୀ : ମୂଷାମାନେ ହଇରାଣ କରୁଚନ୍ତି ତାଙ୍କୁ ନମାରି ଆଉ କ'ଣ ପୂଜା କରିବା ?

ମନୋଜ : ଟଙ୍ଗିଆ କଥା ତମର ମନେ ଅଛି ?

ବନାନୀ : କୋଉ ଟଙ୍ଗିଆ ?

ମନୋଜ : ନିଧିଆ ଘଡ଼େଇ ପୁଅ ।

ବନାନୀ : ନିଧିଆ ଘଡ଼େଇର ଟଙ୍ଗିଆ ବୋଲି ଆଉ ଗୋଟେ ପୁଅ ଥିଲା କି ?

ମନୋଜ : ତମେ କ'ଣ ଦେଖିନା ? ନାଇଁ ନାଇଁ ତମେ ଦେଖିନା । ସେତେବେଳକୁ ଆମର ବାହାଘର ହେଇ ନଥିଲା ।

ବନାନୀ : ସିଏ କାଇଁକି ବିଷ ଖାଇଥିଲା ?

ମନୋଜ : ସିଏ ମେଟ୍ରିକ ପରୀକ୍ଷାରେ ଫେଲ୍ ହେଲା । ତା ବାପା ଗାଳି ଦେଲେ; ଟଙ୍ଗିଆ ରାଗିଯାଇ ବିଷଖାଇ ଦେଲା ।

ପ୍ରକାଶ : ସେଇଠୁ କ'ଣ ହେଲା ?

ମନୋଜ : ସିଏ ଗର୍ଜନ କରି ଘର ସାରା ଗଡ଼ିଲା । ତା ଆଖି ଦିଇଟା ବଡ଼ ବଡ଼ ହୋଇ ଡ଼ିମା ଡ଼ିମା ଦିଶିଲା । ସିଏ ବଡ଼ ପାଟିରେ କୁହାଟିଲା- ମୋ ପେଟ ଭିତର ଅନ୍ତନାଡ଼ି ଛିନ୍‌ଭିନ୍ ହୋଇ ଚିରି ହେଇଯାଉଚି । ଛାତି ଆଉ ପେଟରେ ରଡ଼ ନିଆଁ କୁଢ଼େଇଲା ପରି ଜଳି ଯାଉଚି ।

ଅନୀତା : ସେ ଲୋକଟା ମଲା ନା ଜୀଇଲା ?

ମନୋଜ : ତାକୁ ଟେକା ଟେକି କରି ଡ଼ାକ୍ତରଖାନା ନିଆଗଲା । ଆମ ଗାଆଁରୁ ତ ଡ଼ାକ୍ତରଖାନା ଅନେକ ବାଟ । ବାଟରେ ସିଏ ଛଟ ପଟ ହେଇ ମରିଗଲା । ଟଙ୍ଗିଆର ବିକଳ ମୋ ମନରୁ ଏଯାଏ ଲିଭି ନାହିଁ । ତା ଛଡ଼ା ବିଷ ଦେଇ ମୂଷା ମାରିବାର ଆଉ ଗୋଟେ ଅସୁବିଧା ଅଛି ।

ବାନାନୀ : ଆଉ କି ଅସୁବିଧା ?

ମନୋଜ : ବିଷ ଖାଇ ମୂଷା କିଏ କେଉଁଠି ମରିକି ଶୋଇବେ ଜାଣି ହେବ ନାହିଁ । ତାଙ୍କ ଉପରେ ଥାଳଣା ସନ୍ଧିରେ, ଖଟତଳେ, ଆଲମିରା ତଳେ କି କୋଉ ଥାକ ଉପରେ ମରିବେ, ପଚିକି ପୋକ ସାଲୁବାଲୁ ହୋଇ ଦୁର୍ଗନ୍ଧ କରିବ; ମୋତେ ଜାଣି ହେବ ନାହିଁ ।

ବନାନୀ : ମୂଷାମରା ଯନ୍ତାଟାଏ ତାହେଲେ କିଣିଆଣ ।

ପ୍ରକାଶ : ହଁ ବାପା ! ଯନ୍ତାଟାଏ ଆଣ ।

ଅନୀତା : ମୁଁ ନୁହଁ, ମୋ ସାଙ୍ଗ ମମତା ଘରେ ଗୋଟେ ମୂଷାଯନ୍ତା ଦେଖିଚି । ତାର ଦାନ୍ତ ଅଛି ।

ମନୋଜ : ହଁ, ମୂଷାଯନ୍ତାର ଦାନ୍ତ ଅଛି । ଯନ୍ତା ଭିତରେ ଶୁଖୁଆ ଖଣ୍ଡେ ବାନ୍ଧି ଦେବା । ଶୁଖୁଆ ଖାଇବା ବେଳେ ମୂଷାର ବେକକୁ ଯନ୍ତାର ଦାନ୍ତ ଚାପି ଧରିବ । ମୂଷାର ଦେହ ଭିତର, ବାହାର ହେଉଥିବା ପବନଟା ଯନ୍ତା ଦାନ୍ତର ଦୁଇପଟେ ଅଟକି ଯିବ । ମୂଷାଟା ମରିଯିବ । ମୂଷାକୁ କିଛି ଯନ୍ତ୍ରଣା ହେବ ନାହିଁ ।

ପ୍ରକାଶ : ଯନ୍ତାରେ ମୂଷାକୁ କ'ଣ କିଛି କଷ୍ଟ ହେବ ନେଇଁ ?

ମନୋଜ : ମୃତ୍ୟୁ ନିଶ୍ଚୟ କଷ୍ଟ ଦେବ । ତେବେ ବିଷଖିଆ ଯନ୍ତ୍ରଣାଠାରୁ ଏ ଯନ୍ତ୍ରଣା କମ୍ ।

ବନାନୀ : ଏତେ କଥାରୁ କ'ଣ ମିଳିବ ? ମୂଷାମାନେ ଉତ୍‌ପାତ କରୁଛନ୍ତି, ବିଷଦେଇ କ'ଣ ନା ଯନ୍ତାରେ ପକାଇ କ'ଣ ଯେମିତି ହେଲେ ନମାରିଲେ ଆଉ ରକ୍ଷା ନାହିଁ ।

ମନୋଜ : ଆମ ଦଣ୍ଡ ବିଧି ଆଇନ୍‌ରେ ବିଷ ଦେଇ ମାରିବାର ବ୍ୟବସ୍ଥା ନାହିଁ । ବରଂ ଅତି ସାଂଘାତିକ ଅପରାଧୀକୁ ଫାଶୀ ଦେଇ ମାରିବାର ବ୍ୟବସ୍ଥା ଅଛି ।

ବନାନୀ : ଠିକ୍ ଅଛି, ମୂଷାଯନ୍ତାଟାଏ କିଣିଆଣ ।

ମନୋଜ : ମୁଁ ଆଜି ସଞ୍ଜବେଳକୁ କିଣି ଆଣିବି ।

ବନାନୀ : ନାଇଁ, ତମେ ଏଇ ସାଙ୍ଗେ ସାଙ୍ଗେ ଯା କିଣିକି ଆଣିବ ।

ମନୋଜ : ହଉ ତାହେଲେ ମୋ ସାଇକେଲ୍ ଚାବିକାଠିଟା ଦିଅ ।

ବନାନୀ : ଅନୀତା ! ସେଇ ଥାକ ଉପରେ ଚାବିକାଠିଟା ଅଛି ଆଣ । (ଅନୀତା ଥାକରୁ ସାଇକେଲ୍ ଚାବିକାଠି ଆଣି ମନୋଜଙ୍କୁ ଦେଲା)

ଆନଂଦ ଚଂଦ୍ର ପହି

ମନୋଜ : ଆଉ କ'ଣ କିଣା ହେବାର ଅଛି ?

ବନାନୀ : ନା, ଆଉ କିଛି ଦରକାର ନାହିଁ ।

ପ୍ରକାଶ : ମୁଁ ତମ ସାଙ୍ଗରେ ଯିବି ବାପା ।

ମନୋଜ : ହଉ ଆସ୍ ।

(ମନୋଜ ଓ ପ୍ରକାଶ ବାହାରକୁ ଗଲେ ।)

ବନାନୀ : ଶୀଘ୍ର ଆସିବ ।

ମନୋଜ : ହଉ ।



## ଚତୁର୍ଥ ଦୃଶ୍ୟ

(ମନୋଜଙ୍କ ଘର । ସମୟ ରାତି ଏଗାରଟା । ମନୋଜ ମୂଷାଯନ୍ତାଟି ବସାଇବାକୁ ଯାଉଛନ୍ତି ।)

ବନାନୀ : ସେଇଠି ଥୁଅ । ଯନ୍ତାଟାକୁ ଧରିକି ଏଘର ସେ ଘର କ'ଣ ହଉଚ ?

ମନୋଜ : ରୋଷେଇ ଘରେ ବେଶି ମୂଷା, ସେଠି ଥୋଇଲେ ଭଲ ହୁଅନ୍ତା ।

ବନାନୀ : ମୂଷା କୋଉଘରେ ନାହାଁନ୍ତି ? ରାତିଯାକ ଏଘର ସେଘର ଧାଆଁ ଧପଡ଼ କରୁଛନ୍ତି । ଗୋଟେ କାମ କର ।

ମନୋଜ : କି କାମ ?

ବନାନୀ : ବାଟ ଘରେ ଥୋଇ ଦିଅ । ରୋଷେଇ ଘର, ଶୋଇବା ଘର, ଦାଣ୍ଡଘର ସବୁଘରର କବାଟ ଖୋଲିଦେବା; କେବଳ ଦାଣ୍ଡ କବାଟଟା ବନ୍ଦକରିଦେବା । ଶୁଖୁଆ ବାସ୍ନା ପାଇଲେ ସବୁଘରୁ ମୂଷା ଆସିକି ବାଟଘରେ ଏକାଠି ହେବେ ।

ମନୋଜ : (ବାଟଘରକୁ ଗଲେ ଓ ସେଇ ବାଟଘରୁ କହିଲେ) ଏଇ ଶିଳ ଉପରେ ଥୋଇବି ?

ବନାନୀ : (ହାଇ ମାରି) କାଲି ରାତିଯାକ ଅନିଦ୍ରା, ଆଜି ଆସି ରାତି ଏଗାରଟା ବାଜିଲାଣି । ଯୋଉଠି ଥୋଉଚ ଥୋଇଦିଅ, ଶୋଇବା ।

ମନୋଜ : ଯନ୍ତାଟା ଏମିତି ଖାଲି ଥୋଇ ଦେବିନା ଗୋଟେ ଡ଼ୋରରେ ବାନ୍ଧିଦେବି ?

ବନାନୀ : ବାନ୍ଧିବ କାହିଁକି ?

ମନୋଜ : ବଡ଼ ମୂଷା ପଡ଼ିଲେ ଯନ୍ତାଟାକୁ ଟାଣି ନେଇଯିବ ।

ବନାନୀ କେତେ ବଡ଼ ମୂଷା ଏମିତି ପଡ଼ିବ ଯେ ଯନ୍ତାଟାକୁ ନେଇଯିବ ?

ମନୋଜ : ଯଦି ଶୁଖୁଆ ଖାଇବାକୁ ଆସି ବିଲେଇ ଯନ୍ତାରେ ପଡ଼େ ?

ବନାନୀ ହଉ ବାନ୍ଧି ଦେବ ଯଦି ଦିଅ । ଏଇ ଦଉଡ଼ିଟା ନିଅ । ଟଣକ ବାନ୍ଧିଦିଅ । ନିଦ ମାଡ଼ିଲାଣି ଶୋଇବା ।

ମନୋଜ ଆଉ ଟିକେ ଲମ୍ବା ଦଉଡ଼ି ଦଉନା, ଏଇଟା କ'ଣ ପାଇବ ?

ବନାନୀ : ଲମ୍ୱା ଡ଼ୋରିଟେ ଏଇନେ କୋଉଠୁ ପାଇବି ? ଦିଅ ସେଇଟାରେ ବାନ୍ଧିଦିଅ । ହଁ ଏଥର ଡ଼ୋରିର ଆର ମୁଣ୍ଡଟା ସେଇ ଝରକା ରେଲିଂରେ ବାନ୍ଧିଦିଅ । ପାଇଲାତ, ପାଇବ ନେଇ କ'ଣ କହୁଥିଲ ? ଆଉ ଠିଆ ହେଲ କାହିଁକି ? ଆସ, ଶୋଇବା ଆସ ।

ମନୋଜ : (ବାଟ ଘରୁ ଏ ଘରକୁ ଆସିଲେ) ପିଲାମାନେ ଶୋଇଲେଣି ?

ବନାନୀ : ସେମାନେ ଘଣ୍ଟେ ହେଲା ଶୋଇଲେଣି । ତମେ ଯା, ଶୁଅ । ମୁଁ ଆଲୁଅ ଲିଭାଇକି ଶୋଇବି ।

(ମନୋଜ ଖଟ ଉପରେ ଶୋଇଲେ । ବନାନୀ ଆଲୁଅ ଲିଭାଇ ଶୋଇଲେ ।)



## ପଞ୍ଚମ ଦୃଶ୍ୟ

(ରାତି ପ୍ରାୟ ଦୁଇଟା । ଯନ୍ତାରେ ପଡ଼ି ମୂଷା ଖଡ଼ ଖଡ଼ କରୁଥିବା ଶବ୍ଦ ଓ ଚେଁ ଚେଁ ଶବ୍ଦ ରହି ରହି ଶୁଭୁଛି ।)

ମନୋଜ : (ନିଦରୁ ଉଠି ବିଛଣାରେ ବସିଲେ ଓ ଶବ୍ଦ ଆସୁଥିବା ଆଡ଼କୁ କାନ ଡ଼େରିଲେ ।) ଯନ୍ତାରେ ମୂଷା ପଡ଼ିଲା ବୋଧ ହୁଏ । ବନାନୀ ! ଏ ବନାନୀ ! ବନାନୀ !

ବନାନୀ : (ହାଇ ମାରି) କ'ଣ ହେଲା ?

ମନୋଜ : ଯନ୍ତାରେ ମୂଷା ପଡ଼ିଚି, ଆଲୁଅ ଲଗା ।

ବନାନୀ କାଲିଠୁ ଲାଇନ୍ ଯାଇଚି, ଆଜିଯାଏ ଆସିନେଇଁ । (ଦିଆସିଲି କାଠି ଜଳାଇ ଲଣ୍ଠନ ଲଗାଇଲେ)

ମନୋଜ : ପ୍ରକାଶ ! ପ୍ରକାଶ !

ପ୍ରକାଶ : ଉଁ ।

ମନୋଜ : ଯନ୍ତାରେ ମୂଷା ପଡ଼ିଚି । ଉଠ୍, ଦେଖିବୁ ଉଠ୍ ।

ପ୍ରକାଶ : (ଉଠିକି ବସିଲା) କାଇଁ ?

(ଏଇ ସମୟରେ ଯନ୍ତାଟା ପୁଣି ଖଡ଼ ଖଡ଼ ଧଡ଼ ଧଡ଼ ହେଲା)

ବନାନୀ : ମୂଷାଟା ଯନ୍ତାରେ ପଡ଼ି ଛାଟି ପିଟି ହେଉଛି ।

ପ୍ରକାଶ : ଅନୀତା ! ଏ ଅନୀତା !

ଅନୀତା : ଉଁ ।

ପ୍ରକାଶ : ଉଠ୍‌ବେ ଉଠ୍ । ମୂଷା ଦେଖିବୁ ଉଠ୍ ।

ଅନୀତା : ମୂଷା !

ପ୍ରକାଶ : ବାପା ଯୋଉ ଯନ୍ତା ବସେଇ ଥିଲେ ସେଇ ଯନ୍ତାରେ ମୂଷା ପଡ଼ିଚି ।

ଅନୀତା : କାଇଁ କୋଉଠି ?

ପ୍ରକାଶ : କାନଡ଼େର, ଯନ୍ତାରେ ମୂଷାଟା ପଡ଼ି ଧଡ୍ ଧଡ୍ ଖଡ୍ ଖଡ୍ କରୁଚି ।

ବନାନୀ : ଚାଲିଲ ଦେଖିବା କେଡ଼େ ମୂଷାଟେ ପଡ଼ିଚି ।

ପ୍ରକାଶ : ବାପା ଚାଲୁନ ?

ମନୋଜ : ହଉ ଚାଲ ।

ଅନୀତା : ବୋଉ ମୁଁ ଯିବି ?

ବନାନୀ : ଆସୁ ନାହିଁ । (ମନୋଜ ପ୍ରତି) ଆରେ ତମେ ଆଗରେ ଚାଲୁନ, ଏମିତି ଠିଆଟା ହେଲ କାଇଁକି ?

ବନାନୀ : ତମେ ଆଲୁଅଟା ଆଣ ।

(ମନୋଜ, ପ୍ରକାଶ, ବନାନୀ ଓ ଅନୀତା ସମସ୍ତେ ବାଟ ଘରକୁ ଗଲେ । ଅଳ୍ପ ସମୟ ମଧ୍ୟରେ ସମସ୍ତେ ଫେରି ଆସିଲେ ।)

ମନୋଜ : ଏଡ଼େ ବଡ଼ ମୂଷାଟେ ଯନ୍ତାରେ ପଡ଼ିଚି । ଯନ୍ତାଟା ମୂଷାର ଅଣ୍ଟାରୁ ଚାପିଧରିଚି ବୋଲି ସିଏ ଏଯାଏ ବଞ୍ଚିଚି । ବେକରେ ପଡ଼ିଥିଲେ ମରିସାରନ୍ତାଣି ।

ପ୍ରକାଶ : ବାପା ! ଦେଖିଚନା ମୂଷା ଆଖିରୁ କେମିତି ଲୁହ ବହୁଚି । ସିଏ ବହୁତ କାନ୍ଦିଲାଣି । ତା ମୁହଁଟା ଭାରି କାନ୍ଦୁରା ଦିଶୁଚି । ତାକୁ ଭାରି କଷ୍ଟ ହେଉଥିବ । ନୁହଁ ବାପା ?

ଅନୀତା : ସିଏ ଆମ ମୁହଁକୁ ବିକଳ ହେଇ ଅନେଇଥିଲା । ମୂଷାର ପାଟି ଫିଟୁଥିଲେ ସିଏ କାନ୍ଦି କାନ୍ଦି କହିଥାନ୍ତା—ମତେ ଭାରି କଷ୍ଟ ହେଉଚି । ମତେ ଏଥିରୁ ଶୀଘ୍ର ମୁକୁଳେଇ ଦିଅ; ନହେଲେ ମୁଁ ମରିଯିବି ।

ବନାନୀ : ରାତି ଅନିଦ୍ରା ହେଇ ଏମିତି ମୂଷା ଦେଖୁଥିବା ନା ଶୋଇବା ? ନିଅ, ବାଡ଼ି ନିଅ । ମୂଷାଟାକୁ ପିଟିଦିଅ ଶୋଇବା ।

ମନୋଜ : (ନୀରବ)

ବନାନୀ ଏଁ ତମ ମୁହଁଟା ଏମିତି ଡ଼ରିଲା ଡ଼ରିଲା ଦିଶୁଚି କାହିଁକି ? ଛି, ଏମିତି ଡ଼ରକୁରା ମଣିଷ ତମେ ? ସାମାନ୍ୟ ମୂଷାଟାକୁ ଏତେ ଡ଼ର ? ବାଘଟାଏ ଦେଖିଲେ ତମେ କ'ଣ ନହେବ ?

ମନୋଜ : ମୂଷାଟା କେମିତି ବିକଳ ହୋଇ ଆମ ମୁହଁକୁ ଚାହିଁଥିଲା ତୁମେ ଦେଖିଚ ? ଗୋଟେ ଜୀବର ଅଣ୍ଟାରୁ ଯନ୍ତାର ଦାନ୍ତ ଚାପି ଧରିଛି, ସିଏ ଛାଟିପିଟି ହେଉଛି ଯନ୍ତ୍ରଣାରେ । ଲୁହ ସାଲୁ ବାଲୁ ହୋଇ କାନ୍ଦୁଚି । ମୁକ୍ତି ପାଇବାକୁ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳେଇଚି, କାକୁତି ମିନତି ଭରା ଦୃଷ୍ଟିରେ ଆମ ସାହାଯ୍ୟ ମାଗୁଚି । ଏମିତି ଗୋଟେ ଅସହାୟ ଜୀବ ମୁଣ୍ଡରେ ମୁଁ କେମିତି ପାହାର ଦେବି ?

ବନାନୀ ଯୋଉ ମୂଷା ତୁମକୁ କାଲି କାମୁଡ଼ିଥିଲା, ଆମ ଘରେ କାନ୍ଦ ବୋବାଳି ପଡ଼ିଥିଲା, ସେଇ ମୂଷା ପାଇଁ ତମର ଆଜି ଏତେ

ଦୟା ?

ମନୋଜ : ମୂଷା ଅନ୍ଧାର ରାତିରେ ଖାଦ୍ୟବୋଲି ଭାବି ମୋ ଆଙ୍ଗୁଳିଟାକୁ କାମୁଡ଼ି ଦେଇଥିଲା । ମୋର ଜୀବନ ନେବା ତାର ଉଦ୍ଦେଶ୍ୟ ନଥିଲା । ଇଏ କିନ୍ତୁ ସଂପୂର୍ଣ୍ଣ ଭିନ୍ନ କଥା । ଯନ୍ତାରେ ପଡ଼ି ଛଟପଟ ହେଉଥିବା ଜୀବଟିଏର ମୁଣ୍ଡରେ ମୁଁ ପାହାର ଦେଇ ପାରିବି ନାହିଁ । ନା, କଦାପି ନୁହଁ ।

ବନାନୀ : ନପିଟିବ ଯଦି ବାଡ଼ିଟା ଧରି ଠିଆ ହେଲ କାହିଁକି ?

ମନୋଜ : କୁରୁକ୍ଷେତ୍ର ଯୁଦ୍ଧରେ ରଥରେ ଚଢ଼ି, ହାତରେ ଅସ୍ତ୍ରଶସ୍ତ୍ର ଧରି ଏମିତି ଗୋଟେ ଧର୍ମ ସଙ୍କଟର ସମ୍ମୁଖୀନ ହୋଇଥିଲେ ମହାରଥୀ ଅର୍ଜୁନ ।

ବନାନୀ : ଅର୍ଜୁନ ?

ମନୋଜ : ହଁ, ମଧ୍ୟମ ପାଣ୍ଡବ ଅର୍ଜୁନ । ତାଙ୍କ ଆଗରେ ତାଙ୍କର ଭାଇ ବିରାଦର, ଗୁରୁ ଦ୍ରୋଣ, ପିତାମହ ଭୀଷ୍ମ ଆଉ ଅନେକ ନିକଟ ସମ୍ପର୍କୀୟ । କାହା ମୁଣ୍ଡ କାଟିବେ ସିଏ ? କାହା ଛାତିକୁ ଶର ବିନ୍ଧିବେ ? ତାଙ୍କ ହାତ ଥରି ଉଠିଲା, ଛାତି ଧଡ଼ପଡ଼ ହେଲା । ଅର୍ଜୁନ ଯୁଦ୍ଧ କରିବାକୁ ରୋକ୍ ଠୋକ୍ ମନା କରିଦେଇଥିଲେ ।

ବନାନୀ : ସେମାନେ ଥିଲେ ମଣିଷ, କିନ୍ତୁ ଇଏ ଗୋଟେ ସାମାନ୍ୟ ମୂଷା ।

ମନୋଜ : ମଣିଷ ଦେହରେ ଯେଉଁ ଜୀବନ, ମୂଷା ଦେହରେ ମଧ ସେଇ ଜୀବନ । କେବଳ ଦେହର ଆକାର ଅଲଗା, ଅଲଗା ।

ବନାନୀ : ସେମାନେ ଥିଲେ ଅର୍ଜୁନଙ୍କର ସମ୍ପର୍କୀୟ । ମୂଷା ସହିତ ଆମର କି ସଂପର୍କ ଅଛି ? ସାମାନ୍ୟ ମୂଷାଟା ପାଇଁ ତମେ କାହିଁକି ଏତେ ଭାବୁଛ ?

ମନୋଜ : ମୂଷାର ନିଜର ଘର ନାହିଁ, ସିଏ ଆମ ସହିତ ଆମ ଘରେ ବାସ କରେ । ସିଏ ଆମ ପରିବାରର ସଭ୍ୟ ।

ବନାନୀ : ଅର୍ଜୁନ ସିନା ପ୍ରଥମେ ଯୁଦ୍ଧ କରିବାକୁ ମନା କରୁଥିଲେ, ତାପରେତ ସିଏ ଯୁଦ୍ଧକଲେ, ଆଉ ଭାଇ, ବନ୍ଧୁ, କୁଟୁମ୍ବଙ୍କୁ ହତ୍ୟାକଲେ ?

ମନୋଜ : ସେ କଥା ସତ; କିନ୍ତୁ ମହାଭାରତ ଯୁଦ୍ଧପରେ ସିଏ ଅନୁତାପ କଲେ । ଜୀବବଧ ପାପ ଛଡ଼ାଇବା ପାଇଁ ପାଣ୍ଡବମାନେ

ଅଶ୍ୱମେଧ ଯଜ୍ଞ କଲେ ।

ବନାନୀ : ତମେ ତା ହେଲେ ମୂଷାଟାକୁ ପିଟିବ ନାହିଁ ?

ମନୋଜ : ପିଟିବି ନାହିଁ ନୁହଁ, ପିଟି ପାରିବି ନେଇଁ । ଭାବିଲ ଦେଖି ଯଦି ଜଣେ ମଣିଷର ଅଣ୍ଟାକୁ ଏମିତି ଯନ୍ତାର ଦାନ୍ତ ଚାପିଧରିଥାନ୍ତା, ଆଉ ସିଏ ଯନ୍ତ୍ରଣାରେ ଛଟପଟ ହୋଇ ବିକଳରେ ସାହାଯ୍ୟ ମାଗୁଥାନ୍ତା, ତାହେଲେ କ'ଣ ତା ମୁଣ୍ଡରେ ପାହାର ବସାଇବା ପାଇଁ ତମେ ମୋ ହାତକୁ ବାଡ଼ି ବଢ଼ାଇ ଦେଇ ପାରନ୍ତ ?

ବନାନୀ : ଯଦି ବାଡ଼େଇବ ନାହିଁ ତା ହେଲେ ଠିଆହେଲ କାଇଁକି, ଶୋଇବା ଚାଲ । ମୂଷାଟା ଯନ୍ତାରେ ସେଇମିତି ଛାଟିପିଟି ହେଉ ମରିଯିବ । ଆରେ ତମେ ଏମିତି ଖୁଣ୍ଟଟା ପରି ଠିଆଟା ହେଲ କାଇଁକି ? ଚାଲ, ଶୋଇବା ଚାଲ ।

(ମନୋଜ କିଛି ନକହି ଅନିଚ୍ଛା ସତ୍ତ୍ୱେ ଶୋଇବାକୁ ଗଲେ । ପ୍ରକାଶ, ଅନୀତା ଓ ବନାନୀ ସମସ୍ତେ ଆଲୁଅ ଲିଭାଇ ଶୋଇଲେ । ଗଭୀର ରାତିର ସାଇଁ ସାଇଁ ଶବ୍ଦ ସାଙ୍ଗକୁ ମୂଷା ଯନ୍ତାର ଧଡ଼୍ ଧଡ଼୍ ଖଡ଼୍ ଖଡ଼୍ ଶବ୍ଦ ଶୁଭିଲା । ମନୋଜ ବିଛଣାରେ ଉଠିକି ବସିଲେ ।)

ମନୋଜ : ନା, ବିଛଣାରେ ଯେତେ ଏକଡ଼ ସେକଡ଼ ହେଲେ ବି ମୋତେ ନିଦ ଆସୁ ନାହିଁ । ମୂଷାଟା ଯନ୍ତାରେ ପଡ଼ି ପ୍ରାଣ ବିକଳରେ ଛାଟିପିଟି ହେଉଛି । ମୋତେ ଲାଗୁଛି ଯେମିତି ମୋ ଅଣ୍ଟାରେ ଯନ୍ତା ପଡ଼ିଚି । ମୋ ଚାରିକଡ଼ର ମଣିଷମାନେ ସମବେଦନାରେ ଜୁବୁବୁ, କିନ୍ତୁ କେହି ଯନ୍ତା ଖୋଲୁ ନାହାଁନ୍ତି ।

(ପୁଣି ଯନ୍ତା ଖଡ଼ଖଡ଼ ଆଉ ମୂଷା ଚେଁ ଚେଁ ଶବ୍ଦ ହେଲା) ଗୋଟେ ଜୀବ ଜୀବନ ଯନ୍ତ୍ରଣାରେ ଏମିତି ଛାଟିପିଟି ହେଉଥିବା ବେଳେ ଆଉ ଗୋଟିଏ ଜୀବ କେମିତି ନିଶ୍ଚିନ୍ତରେ ଶୋଇ ପାରିବ ? ବନାନୀତ ଶୋଇଲେଣି, ମତେ ଆଉ ବାଧା ଦେବାକୁ କେହି ନାହିଁ । ମୁଁ ଯାଏ ମୂଷାଟାକୁ ଯନ୍ତାରୁ ଖୋଲିଦିଏ ।

(ମନୋଜ ବିଛଣା ଛାଡ଼ି ଖଟରୁ ତଳକୁ ଓହ୍ଲାଇଲେ । ଲଣ୍ଠନଟା ଜଗାଇ ସେଇ ମୂଷା ଯନ୍ତା ପାଖକୁ ଗଲେ । କିନ୍ତୁ ତତ୍‌କ୍ଷଣାତ୍ ସେଠୁ ଫେରି ଆସିଲେ ।)

ଆନନ୍ଦ ଚନ୍ଦ୍ର ପତି

ନା । ମୂଷାଟାକୁ ଯନ୍ତାରୁ ଖୋଲିବା ବିପଦଜନକ । ମୂଷାଟେ ଯନ୍ତାରେ ଅନେକ ସମୟଯାଏ ପଡ଼ି ଭୀଷଣ ରାଗିଯାଇଥିବ । ଯନ୍ତାରୁ ଖୋଲିବା ବେଳେ କିମ୍ବା ଖୋଲି ସାରିବା ପରେ ଯଦି ମୂଷାଟା ମୋତେ କାମୁଡ଼ି ଦିଏ ? ମୂଷାକୁ ମୁକୁଳାଇବା ପାଇଁ ମୁଁ ନିଜକୁ ବିପଦରେ ପକାଇ ପାରିବି ନାହିଁ । ଏମିତି ଯନ୍ତ୍ରଣା-ଜର୍ଜର ମୂଷା କାମୁଡ଼ିଲେ କି ବିପଦ ଅଛି କିଏ ଜାଣେ ?
ମୂଷାଟା ସେମିତି ଯନ୍ତାରେ ପଡ଼ି ଥାଉ ।
(ମନୋଜ ଖଟ ଉପରକୁ ଫେରି ଆସିଲେ । ଆଲୁଅ ଲିଭାଇ ଦେଇ ପୁଣି ଶୋଇ ପଡ଼ିଲେ । ଯନ୍ତାର ଧଡ଼୍‌ଧଡ଼୍ ଖଡ଼୍ ଖଡ଼୍ ଶବ୍ଦ ଶୁଣା ଗଲା । ମନୋଜ ଖଟ ଉପରେ ଶୋଇ କେବଳ ଛଟପଟ ହେଲେ । ତାଙ୍କୁ ଆଉ ଆଦୌ ନିଦ ହେଲା ନାହିଁ ।)



## ଷଷ୍ଠ ଦୃଶ୍ୟ

(ସକାଳ ହେଲା । ନିଦରୁ ଉଠିଲେ ବନାନୀ । କିନ୍ତୁ ସେ ପର୍ଯ୍ୟନ୍ତ ନିଦ ଯାଇଥିଲେ ମନୋଜ । ବନାନୀ ଝରକା ଖୋଲିଦେଲେ ।)

ବନାନୀ : (ମନୋଜଙ୍କୁ ନିଦରୁ ଉଠାଇଲେ) ଉଠ, ଉଠମ । ଆରେ ସକାଳ ହେଲାଣି ଉଠ ।

ମନୋଜ : (ହାଇମାରି) ସକାଳ ହେଲାଣି ?

ବନାନୀ : ଝରକା ଖୋଲି ଦେଇଚି, ଦେଖୁନା ବାହାରେ କେତେ ଖରା ପଡ଼ିଲାଣି ।

ମନୋଜ : (ଉଠି ବସି ଝରକାରେ ବାହାରକୁ ଚାହିଁଲେ) ଆରେ ସତେତ ! ପାହାନ୍ତାରେ ମତେଟିକେ ନିଦ ହୋଇଗଲା ।

ବନାନୀ କାହିଁକି ତମେ କ'ଣ ରାତିରେ ଶୋଇନା କି ?

ମନୋଜ କେମିତି ଶୋଇବି ? ମୂଷାଟା ରାତିଯାକ ଧଡ଼ଧଡ଼ ଖଡ଼ଖଡ଼ କରୁଛି ଯନ୍ତାଟାକୁ ।

ବନାନୀ କହିଲି ପିଟିଦିଅ, ତମେ ମୋ କଥା ଶୁଣିଲ ନାହିଁ ।

ମନୋଜ ଏବେତ ଆଉ ଯନ୍ତାଟା ଖଡ଼ଖଡ଼ ହେଉ ନାହିଁ ।

ବନାନୀ ରାତିଯାକ ଛଟପଟ ହେଇ ହେଇ ସକାଳକୁ ମୂଷାଟା ମରିଯାଇଚି ବୋଧହୁଏ ।

ମନୋଜ : ପୃଥିବୀର ଯନ୍ତ୍ରଣା ଜର୍ଜର ମଣିଷମାନେ ଏମିତି ଯନ୍ତ୍ରଣାରେ ଛଟପଟ ହୋଇ ଦିନେ ନିଶ୍ଚଳ ହୋଇଯିବେ ।

ବନାନୀ : ପ୍ରକାଶ ! ପ୍ରକାଶ ! ଅନୀତା । ଆରେ ଉଠ । ମୂଷାଟା ଯନ୍ତାରେ ଛଟପଟ ହୋଇ ମରିଯାଇଚି ।

ପ୍ରକାଶ }
ଅନୀତା } : ମରିଯାଇଚି ? କାଇଁ, କୋଉଠି ?

ବନାନୀ : ଚାଲ, ଦେଖିବା ଚାଲ ।

(ସମସ୍ତେ ଆଗପଛ ହୋଇ ମୂଷାଯନ୍ତା ପଡ଼ିଥିବା ସ୍ଥାନକୁ ଗଲେ । କେବଳ ଖଟ ଉପରେ ବସି ରହିଲେ ମନୋଜ ।)

ମନୋଜ : ଶୀଘ୍ର ମଲା ମୂଷାଟାକୁ ଯନ୍ତାରୁ ବାହାର କରିଦିଅ ବନାନୀ । ମୂଷାର ଶବଟାକୁ ଅଧିକ ସମୟ ଯନ୍ତାରେ ଚାପି ରଖିବା ଠିକ୍

ନୁହେଁ । ଜୀବନ୍ତ ମୂଷାକୁ ଆମେ ଯନ୍ତାରୁ ମୁକୁଳାଇ ନପାରିଥିବା ଅନୁତାପରୁ ମୁକ୍ତ ହେବା ପାଇଁ ଆମେ ଅନ୍ତତଃ ମୂଷାର ଶବଟାକୁ ଯନ୍ତାରୁ ମୁକ୍ତ କରିଦେବା ।

(ଏଇ ସମୟରେ ବନାନୀ, ପ୍ରକାଶ ଓ ଅନୀତା ଫେରିଆସିଲେ)

ପ୍ରକାଶ : ନା ବାପା ! ମୂଷାଟା ଏତେବେଳେ ଯାଏ ମରି ନାହିଁ ।

ମନୋଜ : ମରିନେଇଁ ?

ଅନୀତା : ଜାଣିଲ ବାପା ! ମୂଷାଟା ଯନ୍ତାରେ ପଡ଼ି କଷ୍ଟ ପାଉଛି ।

ବନାନୀ : ରାତିଯାକ ଛାଟିପିଟି ହୋଇ ହେଇ ହାଲିଆ ହେଇ ପଡ଼ିଥିଲା । ମୁଁ ଯେମିତି ଯନ୍ତାଟା ଖୋଲିବାକୁ ଧରିଛି ସେମିତି ଛଟପଟ ହେଲା ।

ମନୋଜ : ରାତିଯାକ ଛାଟିପିଟି ଜୀବନ ସଂଗ୍ରାମ ଚାଲୁରଖିଥିବା ମୂଷାକୁ ଦେଖିଲେ ମନେହୁଏ ଜୀବନ ସଂଗ୍ରାମର ଶେଷ ନାହିଁ । ମୁକ୍ତିର କୌଣସି ବାଟ ଖୋଲା ନଥିଲା ବେଳେ ମଧ୍ୟ ଜୀବନ ସଂଗ୍ରାମରୁ କେହି ବିରତ ନୁହଁନ୍ତି । ଜୀବନର ଅନ୍ୟନାମ ସଂଗ୍ରାମ ।

ଅନୀତା : ଚାଲ ବାପା ମୂଷାର ମୁହଁକୁ ଦେଖିବ । ସିଏ ରାତିଯାକ କାନ୍ଦିଚି । ତା ଆଖିଟା ଲାଲ ପଡ଼ିଯାଇଚି । ରାତିରେ ତାର ସ୍ତ୍ରୀ ଆଉ ପିଲାମାନେ ତାକୁ ମୁକୁଳେଇବାକୁ କ'ଣ ଯନ୍ତାପାଖକୁ ଯାଇ ନଥିବେ ?

ପ୍ରକାଶ : ଖାଲି ତା ପରିବାର ଲୋକ ନୁହଁ, ତା ପଡ଼ିଶାମାନେ ମଧ୍ୟ ଆସିଥିବେ । ନୁହଁ ବାପା ?

ମନୋଜ : ହଁ, ଆସିଥିବେ । କିନ୍ତୁ ମରଣକୁ ଭୟ କରୁଥିବା ଜୀବମାନେ ନୀରବରେ ଲୁହ ଢ଼ାଳିବା ଛଡ଼ା ଆଉ ବା କ'ଣ କରି ପାରିଥିବେ ?

ଅନୀତା : ରାତିଯାକ ମୂଷାଟା ଏତେ କଷ୍ଟ ପାଇଲାଣି ତାକୁ ଏଥର ଖୋଲି ଦିଅ ବାପା ! ସିଏ ନିଜ ଅଜାଣତରେ ଯୋଉ ଖରାପ କାମ କରିଥିଲା ସେଥିପାଇଁ ସିଏ ଢ଼େର ଦଣ୍ଡ ପାଇସାରିଲାଣି ।

ବନାନୀ : ନାଇଁ, ନାଇଁ ମୋଟେ ଖୋଲନା । ଯନ୍ତାଟାକୁ ନେଇ ବାରିରେ ଥୋଇ ଦିଅ, ମୂଷାଟାକୁ କାଉ କି ବିଲେଇ ଖାଇଦେବେ । ଏଠି କ'ଣ କାଠଟା ପରିଠିଆ ହେଲ ମ ? ଯା ଉଠେଇ ନିଅ

ସେଟାକୁ । ମୁଁ ଘରଦ୍ୱାରା ଓଳେଇବି, ରୋଷେଇବାସ କରିବି ନା, ଦିନରାତି ଖାଲି ଏଇ ପାଳା ଲାଗିଥିବ ? ଯନ୍ତା ଡ଼ୋରଟା ଫିଟେଇ ନେଇଯା ।

ମନୋଜ : ତତଲା ତାଉଆରେ ଛଟପଟ ହେଉଥିବା ଜୀବଟିକୁ ଉଠାଇ ଜଳନ୍ତା ଚୁଲିକି ପକାଇଲା ପରିହେବ । ଏ ନିଷ୍ଠୁର କାମ ମୁଁ କରି ପାରିବି ନେଇଁ ।

ବନାନୀ : ସିଏ ନ ନିଅନ୍ତୁ, ତୁ ନେଇଯା ପ୍ରକାଶ ।

ପ୍ରକାଶ : ଆ ଯିବା ଅନୀତା !

ବନାନୀ ଦୂରେଇକି ଠିଆ ହେଇକି ଗୋଟେ ବାଡ଼ିରେ ଯନ୍ତାର ଦାନ୍ତକୁ ତେଡ଼ି ଦେବୁ ଖୋଲିଯିବ । ହୁସିଆର୍ ହାତ ଲଗେଇବୁ ନେଇଁ ।

ଅନୀତା : ଏଇ ବାଡ଼ିରେ ହବ ନେଇଁ ?

ବନାନୀ : ହଁ, ସେଇଟା ହବ । ତମେ ଟିକେ ଯାଉନା ? ଛୁଆ ଗୁଡ଼ାକ ଖୋଲି ପାରିବେ ନେଇଁ ।

ପ୍ରକାଶ ନାଇଁ ବାପା, ତମେ ଆସନା । ଆମେ ଖୋଲିଦେବୁ । ଆ ଅନୀତା !

ଅନୀତା : ଚାଲ୍ ।

(ପ୍ରକାଶ ଓ ଅନୀତାଙ୍କର ପ୍ରସ୍ଥାନ । ସେମାନଙ୍କ ଯିବାବାଟକୁ ଚାହିଁଥିଲେ ମନୋଜ । ବନାନୀ ଘର ଓଳାଉଥିଲେ ।)



## ସପ୍ତମ ଦୃଶ୍ୟ

(ସମୟ ସକାଳ ଆଠଟା । ଖାଲି ଯନ୍ତାଟା ଧରି ଘରକୁ ଆସିଲେ ପ୍ରକାଶ ଓ ଅନୀତା ।)

ମନୋଜ : ମୂଷାଟାକୁ କ'ଣ କଲ ?

ଅନୀତା : ଭାଇ ଯନ୍ତାଟା ବାଡ଼ିରେ ଖୋଲି ଦେଲା । ମୂଷାଟା ଜମା ଚାଲି ପାରିଲା ନେଇଁ । ଭାଇ ତା ମୁହଁରେ ପାଣି ଦେଲା, ତଥାପି ସିଏ ଚାଲି ପାରିଲା ନାହିଁ ।

ପ୍ରକାଶ : ମୂଷାର ଅଣ୍ଟାଟା ଚିପି ହେଇ ଯାଇଚି । ସିଏ ବଞ୍ଚିବ ନେଇଁ ?

ମନୋଜ : ମୂଷାଟା କ'ଣ ବାଡ଼ିରେ ଅଛି ?.

ଅନୀତା : ଭାରି କଷ୍ଟରେ ଘୁସୁରି ଘୁସୁରୁକି ଫୁଲକୁଣ୍ଡ ସନ୍ଧିରେ ପଶିଲା ।

ପ୍ରକାଶ : ମୁଁ ଭାବୁଥିଲି ଯନ୍ତାରୁ ବାହାରିବା ପରେ ମୂଷାଟା ଆମକୁ କାମୁଡ଼ିବାକୁ ଗୋଡ଼େଇବ, କିନ୍ତୁ ସିଏ ଖାଲି କୁକୁକୁକୁ କି ଆମ ମୁହଁକୁ ଅନେଇଲା । ମୁଁ ପାଣି ଦେଲି ପିଇଲା ।

ଅନୀତା : ବାପା ! ମୂଷାଟା କ'ଣ ଭଲ ହେଇଯିବ ନେଇଁ ? ତାଙ୍କର କ'ଣ ଡାକ୍ତର କି ଔଷଧ କିଛି ନାହିଁ ?

ମନୋଜ : ସିଏ କ'ଣ ମଣିଷ ହେଇଚି ଯେ ତାକୁ ଡାକ୍ତର ଔଷଧ ଦବ ?

ବନାନୀ : ମୂଷାଟା କାହିଁ ?

ପ୍ରକାଶ : ବାରିରେ ଅଛି ।

ବନାନୀ : ବାରିରେ କାଉ ମେଳା ମେଳା । ତାକୁ କ'ଣ ଆଉ ରଖିଥିବେ ?

ଅନୀତା : ନାଇଁ ବୋଉ ! ମୂଷାଟା ନୁହଁ ଗୋଟେ ଫୁଲକୁଣ୍ଡ ସନ୍ଧିରେ ଲୁଚିଯାଇଚି । ତାକୁ କାଉ ଦେଖି ପାରିବେ ନାହିଁ ।

ବନାନୀ : ମୁଁ ପରା କହିଲି ପଦାରେ ଖୋଲି ଦେବ । ତମେ ସେ ଫୁଲ କୁଣ୍ଡ ପାଖକୁ ନେଲ କାହିଁକି ?

ପ୍ରକାଶ : ଆମେ ତ ପଦାରେ ଖୋଲିଥିଲୁ, ସିଏ ତା'ର ଘୁଷୁରି ଘୁଷୁରି ଫୁଲ କୁଣ୍ଡ ସନ୍ଧିକି ପଳେଇଲା ।

ବନାନୀ : ତାକୁ କାଉ କି ବିଲେଇ ଜଳଖିଆ କରି ସାରିବଣି । ତମେ ଯା, ପଢ଼ିବ ଯା ।

ଅନୀତା : ନାଇଁ ବୋଉ ! ତାକୁ କାଉକି ବିଲେଇ କେହି ଦେଖି ପାରିବେ ନାହିଁ । ମୁଁ ଯାଉଚି ଦେଖି ଆସିବି ଅଛିନା ନାହିଁ ।

ଆନଂଦ ଚଂଦ୍ର ପତି

ପ୍ରକାଶ : ଚାଲ, ଦେଖିବା ଚାଲ । (ଦୁହିଁଙ୍କର ଦଉଡ଼ା ଦଉଡ଼ା ହୋଇ ପ୍ରସ୍ଥାନ)

କଳାନୀ : (ମନୋଜ ପ୍ରତି) ଦିଇ ଦିନ ହେଲା କି ପାଲା ଲଗେଇଚ ?

ମନୋଜ : ମୁଁ କାହିଁକି ପାଲା ଲଗେଇବି ?

କଳାନୀ : ତମେ ଜେଇକି ମୃଷାଟାକୁ ଯନ୍ତାରୁ ଖୋଲିକି ପକେଇ ଦେଇଥିଲେ କାଇ ନେଇଥାନ୍ତେ । ଏତେ କଥା କାହିଁକି ହେଇଥାନ୍ତା ? ଠିଆ ହେଇ କାହିଁକି ? ଯା, ମୃଷାକୁ ଧରିକି ଡାକ୍ତରଖାନା ଯା । ଛୁଆଙ୍କଠୁ ତ ତମର ଦୟା ବେଶି ଉଛୁଳୁଛି ।

ମନୋଜ : ମତେ ବେଶି ବିରକ୍ତ କରନା କହୁଛି ? (ପ୍ରକାଶ ଓ ଅନୀତା ଦୁହେଁ ମନ ଦୁଃଖରେ ଫେରି ଆସିଲେ)

କଳାନୀ : କ'ଣ ହେଲା କିରେ ? ଏମିତି ମୁହଁ ଶୁଖେଇଚ କାଇଁକି ?

ଅନୀତା : ମୃଷାଟାକୁ କାଉ ନେଇଗଲା ।

ମନୋଜ : ଏଁ, କାଉ ନେଇଗଲା ?

ପ୍ରକାଶ : ହଁ, ନେଇଗଲା ।

କଳାନୀ : ମୃଷାଟା ଅଧା ମରା ହେଇ ଶୁକୁଶୁକୁ ହେଉଥିଲା, କାଉ ନେଲା ଭଲ ହେଲା ।

ପ୍ରକାଶ : ହାଏରେ ମୃଷାଟାକୁ କାଉ ଖାଇବା ବେଳେ ତାକୁ ଭାରି କାଟିଥିବ । ସିଏ କେତେ କାନ୍ଦିଥିବ ।

ମନୋଜ : କାଉ ନେବା ତମେ ଦେଖିଚ ?

ଅନୀତା : ନାଇଁ ଆମେ ଦେଖିନେଉଁ ।

ପ୍ରକାଶ : ଯୋଉଠି ଥିଲା ସେଠି ତାକୁ ଆମେ ପାଇଲୁ ନାହୁଁ । ସିଏତ ଚାଲି ପାରୁନଥିଲା, ଗଲା ଆଉ କୁଆଡ଼େ ?

ଅନୀତା : ଆମେ ବାରି ସାରା ଖୋଜି ଆସିଲୁ କୋଉଠି ହେଲେ ପାଇଲୁ ନେଇଁ । ଫୁଲ କୁଣ୍ଡ ପାଖରେ ନାହିଁ ।

କଳାନୀ : ହଉ ଚାଲ । ଜଳଖିଆ ଖାଇକି ପଢ଼ିବ ଚାଲ । ଚାଲ । (ପ୍ରକାଶ ଓ ଅନୀତା ଅନିଚ୍ଛା ସତ୍ତ୍ୱେ ଆଉ ଘରକୁ ଗଲେ । ତାଙ୍କ ପଛେ ପଛେ କଳାନୀଙ୍କ ପ୍ରସ୍ଥାନ । କିନ୍ତୁ ସେମିତି ଠିଆ ହେଇଥିଲେ ମନୋଜ ।)



# ଅଷ୍ଟମ ଦୃଶ୍ୟ

(ମନୋଜ ମନ ଦୁଃଖରେ ଚିନ୍ତାମଗ୍ନ ହୋଇ ବସିଛନ୍ତି । ସମୟ ଅପରାହ୍ନ ।)

ବନାନୀ : ତମର ପୁଣି କ'ଣ ହେଲା ? କ'ଣ ଏତେ ଭାବୁଛ ?

ମନୋଜ : ନା, କିଛି ନାହିଁ ।

ବନାନୀ : କିଛି ନାହିଁତ, ଏମିତି ମନମାରି ଏଠି ସେଠି ବସୁଛ କାହିଁକି ?

ମନୋଜ : ସେଇ ମୃଷାର ବିକଳ ଆଖି ଦୁଇଟା .......

ବନାନୀ : ମୃଷାଟାତ ଦୁଇଦିନ ହେଲା ମଲାଣି, ତା ଆଖି ଦୁଇଟା କୋଉଠି କେମିତି ଦେଖିଲ ?

ମନୋଜ : ମୁଁ ଆଖି ଖୋଲିଲେ କେବଳ ସେଇ ମୃଷାର କାକୁସ୍ତ ଆଖି ଦୁଇଟା ଦେଖୁଛି ।

ବନାନୀ : ଇଏ କି ଅଦ୍ଭୁତ କଥା ? ତମ ମୁଣ୍ଡ କ'ଣ ଖରାପ ହେଇଗଲାଣି ? ଆମେ ପ୍ରତିଦିନ କେତେ ପିମ୍ପୁଡ଼ି, ଜିଆ, ମାଛି, ମଶା ମାରୁଛେ, ଆଉ ଏ ମୃଷାଟା ପାଇଁ ତମେ ଏତେ ଭାବୁଛ କାହିଁକି ?

ମନୋଜ : ସେଇ ମୃଷାଟା ମାରିବା ଦିନଠୁ ପ୍ରତି ରାତ୍ର ମୁହଁରେ ଦୁଇଟା ଡିମା, ଡିମା ଲୁହ ଡବଡବ ଆଖି ମୁଁ ଦେଖୁଛି । ସେଇ ଆଖି ଭିତର ଦେଇ ଯନ୍ତ୍ରଣାରେ ଛଟପଟ ହେଉଥିବା ମୃଷାଟା ମତେ ଦିଶିଯାଉଛି ।

ବନାନୀ : ତମେ ଅଯଥାରେ ସେଇ ମୃଷାଟା କଥା ଚିନ୍ତାକରି ମୁଣ୍ଡ ଖରାପ କରୁଛ ।

ମନୋଜ : ମୁଁ ଆଖି ବନ୍ଦ କଲେ ମଧ୍ୟ ସେଇ ମୃଷାଟା ମୋ ଛାତି ଭିତରେ ଛଟପଟ ହେଉଛି । ମୋ ଛାତି ହାତରେ ଯନ୍ତ୍ରଟା ପିଟି ହୋଇ ଖଡ଼ଖଡ଼ ଧଡ଼ଧଡ଼ ଶବ୍ଦ କରୁଛି ।

ବନାନୀ : ଏସବୁ ବାଜେ କଥା ତୁମେ ବନ୍ଦ କର ।

ମନୋଜ : ମୁଁ ମିଛ କହୁନାହିଁ ବନାନୀ । ତମେ ଯଦି ମୋ କଥା ବିଶ୍ୱାସ ନ କରୁଛ, ତମେ ମୋ ଛାତିରେ କାନପାରି ଶୁଣ । ତମେ ନିଶ୍ଚୟ ସେ ମୃଷା ଯନ୍ତାର ଧଡ଼ଧଡ଼ ଖଡ଼ଖଡ଼ ଶବ୍ଦ ଶୁଣି ପାରିବ ।

ବନାନୀ : ସାମାନ୍ୟ ମୃଷାଟା ମରିଗଲା ବୋଲି ତମେ ଯଦି ଏତେ ଭାବିବ,

ଏମିତି ପାଗଳ ପରି ଗପିବ, ଆମର ନିକଟ ସଂପର୍କୀୟ ଜଣେ ମରିଗଲେ ତମେ କ'ଣ କରିବ ?

ମନୋଜ : ମୂଷା ଓ ମଣିଷ ଜୀବନ ଭିତରେ କିଛି ଫରକ ନାହିଁ ।

ବନାନୀ : ତମେ ଯେତେ ଯାହା କହିଲେ ବି ମଣିଷ, ମଣିଷ ଆଉ ମୂଷା, ମୂଷା । ମୂଷାଟିଏ ମରିଗଲେ ଏମିତି କିଏ ବ୍ୟସ୍ତ ହେବା କଥା ମୁଁ କେବେ ଜାଣି ନଥିଲି ।

ମନୋଜ : ମୂଷାଟା ମରିଗଲା ନୁହଁ, ମୁଁ ତାକୁ ଖାଦ୍ୟର ପ୍ରଲୋଭନ ଦେଖାଇ ଯନ୍ତା ବସାଇ ଧରିଛି, ରାତିଯାକ ମରଣାନ୍ତକ ଯନ୍ତ୍ରଣାରେ ଛଟପଟ କରାଇ ଶେଷରେ କାଉ ମୁହଁକୁ ଫିଙ୍ଗି ଦେଇଛି ।

ବନାନୀ : ପ୍ରତିଦିନ ଏମିତି ଲକ୍ଷ ଲକ୍ଷ ଘଟଣା ଘଟୁଛି ।

ମନୋଜ : ମୋ ଜୀବନରେ କିନ୍ତୁ ଏମିତି ଏକ ନୃଶଂସ ଘଟଣା ସଂପୂର୍ଣ୍ଣ ନୂଆ ।

ବନାନୀ : ତମ ଜୀବନରେ ଏମିତି ଘଟଣା ନୂଆ ହେଲେବି, ଏମିତି ଘଟଣା ପ୍ରତିଦିନ, ପ୍ରତିମୁହୂର୍ତ୍ତରେ ଆମ ଚାରିପାଖରେ ଘଟିଚାଲିଛି ।

ମନୋଜ ଏଟା ମୂଷା ନହୋଇ ଯଦି ମଣିଷ ହୋଇଥାନ୍ତା, ତମେ କ'ଣ ଯାକୁ ସାମାନ୍ୟ ଘଟଣା କହିପାରନ୍ତ ? ଜଣେ ଲୋକକୁ ଯଦି ଏମିତି ଗୋଟେ ଯନ୍ତାରେ ଧରାଯାଇ ରାତିସାରା ଯନ୍ତ୍ରଣା ଦେଇ ସାରି ସକାଳେ ଚିଲ, ଶାଗୁଣାକୁ ଦିଆଯାଇଥାନ୍ତା, ତାହେଲେ କ'ଣ ଏମିତି ଏକ ଘଟଣାକୁ ତୁମେ ସାମାନ୍ୟ ଘଟଣା ବୋଲି କହିଥାନ୍ତ ?

(ଏହି ସମୟରେ କବାଟ ଠକ୍ ଠକ୍ ହେଲା)

ବନାନୀ : କିଏ ?

ମଦନ : (ଦୁଆର ସେପଟରୁ) ମୁଁ ମଦନ ।

ବନାନୀ : (କବାଟ ଖୋଲି) ଆରେ, ତମେ ପରଲୋକପରି କବାଟ ସେପଟରେ କ'ଣ ଠିଆ ହେଲ ? ଭିତରକୁ ଆସ । ବସ ।

ମଦନ : (ପ୍ରବେଶ କରି ବସୁ ବସୁ) ମନୋଜଭାଇ କ'ଣ ଏମିତି ଉଦାସ ହେଇ ବସିଚନ୍ତି ? କ'ଣ ହେଇଚି ?

ବନାନୀ : (ହସିହସି) କିଛି ନାହିଁ । ସେଇ ମୂଷାଟା ତାଙ୍କ ଭିତରେ ସେଇ ଦିନଠୁ ପଶିଯାଇଛି ।

ମଦନ : କ'ଣ ଯେ ତୁମେ କୁହ ନୂଆଭ ! ମୂଷାଟା ତାଙ୍କ ଭିତରେ ପଶିଲା କୋଉବାଟେ ?

ବନାନୀ : ତାଙ୍କ ମନବାଟେ ?

ମଦନ : ମନବାଟେ ? (ହସିହସି) ଇଏତ ଭାରି ଅଦ୍ଭୁତ କଥା !

ବନାନୀ : ସେଇ ଯୋଉଦିନ ତମ ଭାଇଙ୍କୁ ମୂଷା କାମୁଡ଼ିଥିଲା, ତାପରଦିନ ଆମେ ଯନ୍ତା ବସେଇ ଗୋଟେ ମୂଷା ଧରିଲୁ । ଯନ୍ତାରେ ରାତିଯାକ ଛଟପଟ ହେଉ ମୂଷାଟା ଦରମରା ହେଇ ଯାଇଥିଲା । ପିଲାମାନେ ସକାଳେ ଯନ୍ତାରୁ ମୂଷାଟାକୁ ମୁକୁଳେଇ ଦେଲେ । ମୂଷାଟାକୁ କାଉ ନେଇଗଲା । ସେଇ ଦିନଠୁ ତମ ଭାଇଙ୍କୁ କୁଆଡ଼େ ପାପ ଲାଗିଚି ।

ମଦନ : ପାପ ?

ବନାନୀ : ହଁ, ପାପ ।

ମଦନ : ଇଏ ଗୋଟେ କଥାରେ କଥା ? ଏଇଥି ପାଇଁ ଏତେ ଦୁଃଖ ? କେଡ଼େ କେଡ଼େ ବଡ଼ ପାପର ପ୍ରାୟଶ୍ଚିର ଅଛି, ଏଇ ମୂଷାମରା ପାପ ପାଇଁ କ'ଣ ଆମ ଶାସ୍ତ୍ରରେ କିଛି ବ୍ୟବସ୍ଥା ନାହିଁ ।

ବନାନୀ : (ହସି ହସି) ମଦନ ତମେ ଟିକେ ପୁରୋହିତଙ୍କଠୁଁ ବୁଝିଇ, ମୂଷାମରା ପାପ କାଟିବା ପାଇଁ କି ପ୍ରତିକାର କରିବାକୁ ପଡ଼ିବ ।

ମଦନ : ବୁଝିବି ଆଉ କ'ଣ ? ଗୋଟେ ଚଉକସ କାଙ୍ଗାଳ ଭୋଜନ ଦେଇ ତୀର୍ଥଦର୍ଶନ କରି ଆସିଲେ ପାପ ଖଣ୍ଡନ ହେଇଯିବ । ନହେଲେ ସୁନାରେ ମୂଷାଟିଏ ବଣିଆ ପାଖରେ ଗଢ଼ାଇ ବ୍ରାହ୍ମଣକୁ ଦାନ କରିଦେଲେ ପାପ ଦୂର ହେବ ।

ମନୋଜ : ତମେ ସବୁ କଥାକୁ ଯେତେ ହାଲୁକା ଭାବରେ ନେଉଛ, କଥାଟା ସେତେ ହାଲୁକା ନୁହଁ । ଖାଦ୍ୟ ଦେଇ ଗୋଟେ ଜୀବକୁ ଧରିବା, ରାତିଯାକ ଯନ୍ତାରେ ପକାଇ କଲବଲ କରିବା ଆଉ ସକାଳେ କୁଆ ମୁହଁକୁ ଫିଙ୍ଗି ମାରିବା କମ୍ ନୃଶଂସତା ନୁହଁ । କମ୍ ପାପ ନୁହଁ ।

ବନାନୀ : ମୂଷାଟା ତମର କି ସଂପର୍କ ଲାଗେ ? ସିଏ କ'ଣ ତୁମର ମୂଷା ମଉସା ନା ମୂଷା ପିଉସା ? ତା ପାଇଁ ତମେ ଏତେ ଭାବୁଚ କାହିଁକି ?

ଆନଂଦ ଚଂଦ୍ର ପହି

ମଦନ : ଚାଲ ମନୋଜ ଭାଇ, ଆମେ ସାଙ୍ଗ ହେଇ ପୁରୀ ଯିବା । ଜଗା
ବଳିଆଙ୍କ ଚକା ଆଖିରେ ଆଖି ମିଳେଇ ମନ ପବିତ୍ର କରିବା,
ପାପଛାଡ଼ି ଯିବ ।

ମନୋଜ : ତମକୁ ସବୁ ମୋ କଥାଟା ପରିହାସ ପରି ଲାଗୁଚି, ନୁହଁ ?

ମଦନ : ଥଟା, ପରିହାସ ନୁହଁ ଆଉ କ'ଣ ? ଲୋକେ କାହିଁ, କାହିଁ
ଗଡ଼ମାରୁ କାମ କରୁଚନ୍ତି ତାଙ୍କୁ ପାପ ଲାଗୁନେଇଁ, ଆଉ ତମେ
ଏଇ ମୂଷାଟା ମାରି ଦେଲ ଯେ ପାପ ଲାଗିଗଲା ?

ବନାନୀ ତମ ପରି ଡ଼ରୁଆ, ଛେଉଁଆ ଲୋକ ନହେଲେ ଏମିତି କିଏ
ହେବ ? ତମେ ଯେମିତି ହଉଚ ଅନ୍ୟମାନେ କ'ଣ ଭାବିବେ
ଜାଣିଚ ?

ମନୋଜ କ'ଣ ଭାବିବେ ?

ବନାନୀ ଭାବିବେ ତମେ ଗୋରୁମରା ପାପ କରିଚ ।

ମନୋଜ : ଖାଲି ଗୋରୁମରା କ'ଣ ପାପ ଆଉ କିଛି ପାପ ନୁହଁ ? କାଲି
ରାତିରେ ମୁଁ ଗୋଟେ ସ୍ୱପ୍ନ ଦେଖିଲି ।

ବନାନୀ : ବହିରେ ଯେତେ ସବୁ ଗୁଲିଖଟି ଗପ ଲେଖା ହେଇଚି ସେ ଗୁଡ଼ାକ
ପଢ଼ି ତମ ମୁଣ୍ଡ ଗୋଳମାଳ ଧରିଲାଣି । କି ସ୍ୱପ୍ନ ଦେଖିଲ ?
କ'ଣ ଖୁବ୍ ଭୟଙ୍କର ?

ମନୋଜ : ନା ।

ମଦନ : କ'ଣ ଦେଖିଲ ?

ମନୋଜ : ମୁଁ ସପନରେ ଦେଖିଲି ଜଣେ ବାବାଜି କମଣ୍ଡଳୁଟିଏ ଧରି ଚାଲି
ଚାଲି ଯାଉଥିଲେ, ବାଟରେ ଘୋର ଜଙ୍ଗଲ ପଡ଼ିଲା । ସେଇ
ଜଙ୍ଗଲ ଭିତରେ...

ମଦନ : କ'ଣ ହେଲା ? ବାଘ ବାହାରିଲା ?

ମନୋଜ : ନା ।

ମଦନ : ଅଜଗର ?

ମନୋଜ : ବାଘ ଆଉ ଅଜଗରଠାରୁ ଆହୁରି ଭୟଙ୍କର ଗୋଟେ ଜୀବ
ବାହାରି ବାବାଜିଙ୍କର ବାଟ ଓଗାଳିଲା ।

ବନାନୀ : ଅସୁର ବାହାରିଲା କି ?

ମନୋଜ : ନା, ଅସୁରଠାରୁ ଆହୁରି ଭୟଙ୍କର ଜୀବ ।

ମଦନ : ଆଉ ତାହେଲେ କ'ଣ ସିଂହ ବାହାରିଲା ?

ମନୋଜ : ଗୋଟେ ଦସ୍ୟୁ ବାହାରିଲା, ଦୁର୍ଦ୍ଦାନ୍ତ ଦସ୍ୟୁ । ତା ହାବୁଡ଼ରେ ଯିଏ ପଡ଼େ ସିଏ ତାକୁ ଆଗେ ହତ୍ୟାକରେ, ତାପରେ ତା ପାଖରେ ଯାହା ଜିନିଷ ଥାଏ ନେଇଯାଏ ।

ବନାନୀ : ସେ ଦସ୍ୟୁ କ'ଣ ବାବାଜିକୁ ହାଣିଦେଲା ?

ମନୋଜ : ଦସ୍ୟୁ ବାବାଜିକୁ ହାଣିବାକୁ ଉଦ୍ୟତ ହେବାବେଳକୁ ବାବାଜି ଦସ୍ୟୁର ଗୋଡ଼ତଳେ ଲମ୍ବ ହୋଇ ପଡ଼ିଯାଇ କାକୁତି ମିନତି କଲା ।

(ଏହି ସମୟରେ ମଞ୍ଚ ଆଲୋକ କଟି ଯାଇ ମଞ୍ଚରେ ଗୋଟିଏ କଡ଼ରେ ସ୍ପଟ ଲାଇଟ ପଡ଼ିଲା । ସେଇ ସ୍ପଟ ଭିତରେ ଦେଖାଗଲା ଦସ୍ୟୁ ଠିଆ ହୋଇଛି ଆଉ ତା ଗୋଡ଼ ତଳେ ଲମ୍ବ ହୋଇ ଶୋଇଛନ୍ତି ବାବାଜି ।)

ବାବାଜି : ମୁଁ ବାବାଜି ଲୋକ । ମୋ ପାଖରେ ଏଇ କମଣ୍ଡଳୁଟି ଛଡ଼ା ଆଉ କିଛି ନାହିଁ । ତୁ ଏଇ କମଣ୍ଡଳୁଟି ନେଇ ମୋତେ ଛାଡ଼ିଦେ ।

ଦସ୍ୟୁ : (ଠୋ ଠୋ ହୋଇ ହସି ଉଠିଲା) ତୁ ଶଳା ବାବାଜି ଖୁବ୍ ଚାଲାକ ଅଛୁ । ସବୁ ଲୋକଙ୍କୁ ଠକୁଛୁ ବୋଲି ମତେ ଠକି ଦେବୁ ? ନାଇଁ, ନାଇଁ । ମୋ ପାଖରେ କଥାରେ କିଛି କାମ ନାହିଁ । ଆଗ ହତିଆର । ଅନା ଏଇ ଫାର୍ଶାକୁ ଅନା । ଗୋଟେ ଚୋଟରେ ତୋ ମୁଣ୍ଡ କ'ଣ ବେ, ହାତୀ ମୁଣ୍ଡବି ଛିଣ୍ଡିଯିବ ।

ବାବାଜି : ମୁଁ ବାବାଜି ଲୋକ । ମତେ ଛାଡ଼ିଦେଲେ ତୋର ଧର୍ମ ହେବ ।

ଦସ୍ୟୁ : (ହସିଲା) ମୁଁ ତତେ ଛାଡ଼ିଦେଲେ ତୁ ଯାଇ ପୁଲିସ୍‌କି ଖବର ଦବୁ ନା ? ମୁଁ ଯାହାକୁ ଏ ଜଙ୍ଗଲରେ ଦେଖେ ତାକୁ ହତ୍ୟାକରେ । ତତେ ମୁଁ ହତ୍ୟା କରିବି ।

ବାବାଜି : ମୋ କଥା ଟିକେ ଶୁଣ ବାବା ! ମୋର ଘରଦ୍ୱାରା କି ସଂସାର ଜଂଜାଳ କିଛି ନାହିଁ । ମୁଁ ଆଉ ଜନବସତିକୁ ଫେରି ନଯାଇ ଏଇ ଘନଜଙ୍ଗଲ ଭିତରେ ରହିବି । ତେଣୁ ମୁଁ ପୋଲିସ୍‌ରେ ଖବର ଦେବି ବୋଲି ଯାହା ତମେ ଭାବୁଛ, ସେ ଭୟ ନାହିଁ ।

ଦସ୍ୟୁ : ତୁତ ଶଳା ଏକୁଟିଆ ଚାଲାକ ? ତୁ ଭାବିଛୁ ବୁଡ଼ି ବୁଡ଼ି ପାଣି ପିଇଲେ ମୁଁ କିଛି ଜାଣି ପାରିବି ନେଇଁ ? ତୁ ଡ଼ାଳେ ଡ଼ାଳେ ଗଲେ, ମୁଁ ପତରେ ପତରେ ଯିବି । ତୁ କ'ଣ କହୁଛୁ ? ଏ ଜଙ୍ଗଲରେ ରହିବୁ ?

ଆନଂଦ ଚଂଦ୍ର ପତି

ବାବାଜି : ରହିବି ।

ଦସ୍ୟୁ : ଏଠି ଆଶ୍ରମ କରିବୁ ? ଏଠିକି ପ୍ରତିଦିନ ଶହଶହ ଲୋକ ଆସିବେ, ମୋ ଧନ୍ଦା ବୁଡ଼ିବ ।

ବାବାଜି : ନା, ମୁଁ ସେମିତି କିଛି କରିବି ନାହିଁ । ମୁଁ ଏଇ ରସ୍ତାଠାରୁ ବହୁତ ଭିତରକୁ ଜଙ୍ଗଲ ମଝିରେ ଏକୁଟିଆ ରହିବି । କେହି ଜଣେ ହେଲେବି ସେଠିକି ଯିବେ ନାହିଁ ।

ଦସ୍ୟୁ : ତୁ ଆଶ୍ରମ କଲେ ଲୋକମାନେ ସେଠିକି ନିଶ୍ଚୟ ଯିବେ ।

ବାବାଜି : ଲୋକେ ଯଦି ଆସିବେ ତମର କ୍ଷତି କ'ଣ ? ବରଂ ଲାଭ ଅଛି ।

ଦସ୍ୟୁ : କେମିତି ?

ବାବାଜି ତମେ ତ ଏଇ ରାସ୍ତାରେ ଜଗିଛ; ଯିଏ ଆସିବ ତମେ ତାକୁ ହତ୍ୟା କରିବ । ତାର ଯାହା ଜିନିଷ ଥିବ ଛଡ଼ାଇ ନେବ ।

ଦସ୍ୟୁ : ହଉ, ତା ହେଲେ ତତେ ଛାଡ଼ି ଦେଲି ଯା । କିନ୍ତୁ ଯଦି କେବେ ଚାଲାକି ବାହାର କରୁ ତା ହେଲେ ମତେ ଚିହ୍ନିବୁ ।

ବାବାଜି ନାଇଁ ଜୀବନଦାତା । ମୁଁ ତୁମର କେବେ କିଛି ଅପକାର କରିବି ନାହିଁ । ଏ ଜଙ୍ଗଲ ଛାଡ଼ି ବାହାରକୁ କେବେ ଯିବି ନେଇଁ । (ସ୍ପଟ ଲାଇଟ ଲିଭି ଯାଇ ଲାଇଟ ପଡ଼ିଲା ମନୋଜ, ମଦନ ଓ ବନାନୀଙ୍କ ଉପରେ ।)

ମଦନ ଭାରି ମଜା କଥା । ତା ପରେ କ'ଣ ହେଲା ? ସେ ବାବାଜି କିଛି ଅସୁବିଧା କଲା କି ?

ମନୋଜ : ନା । ବାବାଜି ସେଇ ଜଙ୍ଗଲ ଭିତରେ ଝରଣା କୂଳରେ ଆଶ୍ରମ କରି ରହିଲା ।

ବନାନୀ : ତାପରେ କ'ଣ ହେଲା ?

ମନୋଜ : ଦିନେ ସେ ଦସ୍ୟୁକୁ ଅତ୍ୟନ୍ତ ଶୋଷ ହେଲା । ପାଣି ଖୋଜି ଖୋଜି ସେଇ ଝରଣା କୂଳରେ ପହଞ୍ଚିଲା । ବାବାଜି ସେ ଦସ୍ୟୁକୁ ଦେଖି ତା ଗୋଡ଼ତଳେ ପଡ଼ି କହିଲା ହେ ମୋର ଜୀବନଦାତା ! ମୁଁ ତୁମ ପାଖରେ ଚିର ଋଣୀ ରହିଗଲି, ତୁମର କିଛି ଉପକାର କରି ସେ ଋଣ ପରିଶୋଧ କରିବାର ସୁଯୋଗ ମତେଦିଅ ।

ମଦନ : ସେ ଦସ୍ୟୁ କ'ଣ କହିଲା ?

ମନୋଜ : ସିଏ ଠୋ ଠୋ ହସିଲା । କହିଲା ତୁଟା ମୋର କି ଉପକାର କରିବୁ ? ତୋ ଦ୍ୱାରା କ'ଣ ହେଇପାରିବ ? ବାବାଜି କହିଲେ-

ମୁଁ ଜଣେ ସିଦ୍ଧ ବାବାଜି । ତୁମେ ଯଦି ଜୀବନରେ କିଛି ପାପ କରିଥାଅ ତା ହେଲେ ସେଥିରୁ ମୁକ୍ତି ପାଇବାର ବାଟ ମୁଁ ତୁମକୁ ବତାଇ ଦେବି । ତୁମେ କି ପାପ କରିଛ ମୋ ଆଗରେ ପ୍ରକାଶ କର । ଦସ୍ୟୁ ଦୃଢ଼ସ୍ୱରରେ ମନା କଲା-ନା ମୁଁ କିଛି ପାପ କରିନାହିଁ । ବାବାଜି କିନ୍ତୁ ଛାଡ଼ିବା ଲୋକ ନୁହେଁ । ସିଏ ପୁଣି କହିଲେ-ଏବେ ହୁଏତ ତୁମର ମନେପଡୁନାହିଁ । ଯଦି କେବେ ତୁମର ମନେପଡ଼େ ମତେ ଆସି କହିଲେ ସେ ପାପରୁ ମୁକ୍ତିର ବାଟ ମୁଁ ବତାଇ ଦେବି ।

ବନାନୀ ତାପରେ କ'ଣ ହେଲା ?

ମନୋଜ ଦସ୍ୟୁ ସେଦିନ ଆସି ତା ଘରେ ସ୍ତ୍ରୀ ପିଲାଙ୍କୁ ପଚାରିଲା । ସମସ୍ତେ ମନାକଲେ । ସିଏ କିଛି ପାପ କରିଥିବା କଥା କେହି କହି ପାରିଲେ ନାହିଁ । କିନ୍ତୁ ସେଦିନ ରାତିର ଶେଷ ପ୍ରହରରେ ସେ ଦସ୍ୟୁର ମନେ ପଡ଼ିଲା ସିଏ ଗୋଟେ ମସ୍ତବଡ଼ ପାପ କରିଛି । କାନ୍ଦି କାନ୍ଦି ବାବାଜିଙ୍କ ପାଖରେ ପହଞ୍ଚିଲା ।

(ଲାଇଟ ମଞ୍ଚରୁ କଟି ଗୋଟିଏ ସଟରେ ପଡ଼ିଲା । ଦେଖାଗଲା ବାବାଜିଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଛି ଦସ୍ୟୁ ।)

ଦସ୍ୟୁ : (କାନ୍ଦି କାନ୍ଦି) ମୁଁ ମହାପାପୀ, ମୋତେ ଉଦ୍ଧାର କର ବାବାଜି

ବାବାଜି : ତୁମେ କି ପାପ କରିଛ ନିଃସଙ୍କୋଚରେ ପ୍ରକାଶ କର ।

ଦସ୍ୟୁ : ମୁଁ ଖୁବ୍ ବଡ଼ ପାପ କରିଛି ।

ବାବାଜି : (ଉଠାଇ ବସାଇଲେ) କି ପାପ ?

ଦସ୍ୟୁ : ସିଏ ମୋର ପିଲା ଦିନର କଥା । ଶିବ ମନ୍ଦିରରେ ପୂଜା କରିବା ପାଇଁ କିଛି କଞ୍ଚାକ୍ଷୀର ମୋ ମାଆ ଗୋଟିଏ କାଚ ଗ୍ଲାସ୍‌ରେ ରଖିଥିଲେ । ମୁଁ ଗ୍ଲାସରେ ମୁହଁ ଲଗାଇ ସେ କ୍ଷୀରରୁ ଅଧା ପିଇ ଦେଲି । ଗ୍ଲାସରୁ ଯେତିକି କ୍ଷୀର ପିଇ ଦେଲି ସେତିକି ପାଣି ପୂରାଇ ଦେଲି । ମୁଁ ମହାପାପୀ । ଏ ମହାପାପରୁ ମୁକ୍ତିର ବାଟ ମତେ କହିଦିଅ ବାବାଜି ।

ବାବାଜି : (ହସିଲେ) ଆଚ୍ଛା ଯା ଛଡ଼ା, ତୁମେ ଆଉ କିଛି ପାପ କରିନା ?

ଦସ୍ୟୁ : ନା । କିଛି ପାପ କରି ନାହିଁ ।

ବାବାଜି : ତୁମେ ପ୍ରତିଦିନ ମଣିଷ ମାରୁଛ, ସେଟା କଣ ପାପ ନୁହଁ ?

ଦସ୍ୟୁ : ସେଟା କାହିଁକି ପାପ ହେବ ? ସେଟା ଆମ କୁଳ ବେଉସା । ମୋ

ବାପା ମଣିଷ ମାରୁଥିଲେ, ମୋ ଜେଜେବାପା ମଣିଷମାରୁଥିଲେ, ଆମ ଚଉଦ ପୁରୁଷ ଏମିତି ମଣିଷ ମାରି ଆସିଛନ୍ତି । ମୁଁ ମଣିଷ ମାରିଛି । ମଣିଷ ମାରିବା ମୋର ପେସା । ପାପ କାହିଁକି ହେବ ? (ସ୍ପଟ ଲାଇଟ୍ ଲିଭିଗଲା । ମୁଖ୍ୟମଞ୍ଚ ଆଲୋକିତ ହେଲା)

ମଦନ : ଏ କଥା ତୁମେ ଏଠି କାହିଁକି କହିଲ ?

ମନୋଜ : ଏତିକି ବୁଝିପାରିଲ ନାହିଁ ? ସେ ଦସ୍ୟୁ ମଣିଷ ମାରିବା ପରି ନୃଶଂସ କାମକୁ ପାପ ବୋଲି ଭାବୁନାହିଁ; କିନ୍ତୁ ଠାକୁର ପୂଜା ପାଇଁଥିବା କ୍ଷୀରକୁ ଅଇଁଠା କରି ଦେବାଟା ପାପ ବୋଲି ଭାବୁଛି । ଯାର କାରଣ କ'ଣ ?

ମଦନ : ତମେ କୁହ ।

ମନୋଜ : ସେ ଦସ୍ୟୁର ମନରେ ଦୃଢ଼ଧାରଣା ମଣିଷମାରିବା ତା କୁଳର ବେଉସା । ତେଣୁ ମଣିଷ ମାରିବା ପାଇଁ ତା ମନରେ ଟିକେ ହେଲେ କୁଣ୍ଠା ନାହିଁ । ମଣିଷ ମାରିବା ପରେ ତା ମନରେ ସାମାନ୍ୟ ତମ ପ୍ରତିକ୍ରିୟା ନାହିଁ । ମଣିଷ ମାରିବାଟାକୁ ସିଏ ପାପ ବୋଲି ଆଦୌ ବିଚାରୁ ନାହିଁ । କିନ୍ତୁ ଠାକୁରଙ୍କ ପାଇଁ ରଖାଯାଇଥିବା କ୍ଷୀରକୁ ଅଇଁଠା କରିଦେବାଟା ଭୁଲ୍ କାମ ବୋଲି ସିଏ ଜାଣେ । ତେଣୁ ସେ କାମଟା କଲାବେଳେ ତା ମନ ଆନ୍ଦୋଳିତ ହୋଇଥିଲା । ତେଣୁ ସେ କାମଟା ପାପ କାମ ବୋଲି ସେ ଦସ୍ୟୁ ଭାବୁଛି ।

ବନାନୀ ହେଲା ଯେ, କିନ୍ତୁ ଏଠି ତମେ ସେ କଥା କାହିଁକି କହିଲ ?

ମନୋଜ : କାହିଁକି କହିଲି ସେ କଥା ଆହୁରି ବୁଝାଇବାକୁ ପଡ଼ିବ ? ମୂଷା ମାରିବା ଛୋଟ ପାପ ହୋଇପାରେ, କିନ୍ତୁ ମୁଁ ପ୍ରଥମରୁ ସଚେତନ ଯେ ମୁଁ ଗୋଟିଏ ଭୁଲକାମ, ନୃଶଂସକାମ କରୁଛି । ସେଥିପାଇଁ ମୂଷାଟା ମାରିବା ପରେ ମୋ ମନକୁ ପାପ ଛୁଉଁଛି । ଅପରାଧ କି ପାପ ବୋଲି ଜାଣି ସୁଦ୍ଧା ମଣିଷ ଯେଉଁ ଅପରାଧ କରେ ତାହା ପାପ ।

ମଦନ : ଆମ ଦଣ୍ଡ ବିଧି ଆଇନ୍‌ରେ ମୂଷା ମାରିବା ଅପରାଧ ନୁହଁ । ବରଂ ମୂଷା ମାରିବା ଏକ ଉଚିତ କାମ ବୋଲି ଆମେ ସମସ୍ତେ ଜାଣିଛୁ । ମୂଷା ଫସଲ ନଷ୍ଟକରେ, ଘରର ଅନେକ ପଦାର୍ଥ କାଟି ନଷ୍ଟକରେ । ମୂଷାମାରିଲେ କିଛି ହେଲେ ଅନୁତାପ କରିବାର

ନୁହଁ ।

ମନୋଜ : ସେ କଥା ମୁଁ ଜାଣେ ମଦନ । ଆଇନ ଦିଗରୁ ମୂଷା ମାରିବାର କିଛି ଅସୁବିଧା ନାହିଁ । କିନ୍ତୁ ମୋ ମନ ଭିତରେ ମୂଷା ଓ ମଣିଷ ଏକ ହୋଇ ଯାଇଛି । ମୂଷା ଭିତରେ ମୁଁ ମଣିଷର ଆତ୍ମାକୁ ଦେଖୁଛି । ସେ ମୂଷାର ବିକଳ ଆଖି ଦୁଇଟା ଭିତରେ ମୁଁ ଦେଖି ପାରୁଛି ଦୁଇଟା ଯନ୍ତ୍ରଣା ଭୋଗୁଥିବା ମଣିଷର ଆଖି ।

ବନାନୀ : ତା ହେଲେ ତମେ ଗୋଟେ କାମକର ।

ମନୋଜ : କି କାମ ?

ବନାନୀ ତମେ ମଦନଙ୍କୁ ସାଙ୍ଗରେ ନେଇ ଆଜିରେ ପୁରୀ ଚାଲିଯା । ଜଗନ୍ନାଥଙ୍କୁ ଦର୍ଶନ କରିବ, ଗୋଟେ କାଙ୍ଗାଳ ଭୋଜନ ଦେବ, ନରେନ୍ଦ୍ରରେ ସ୍ନାନ କରିବ ଆଉ ପୁରୀର ସବୁ ଦେବ ଦେବୀ ଦର୍ଶନ କରି ଫେରି ଆସିବ । ମନ ହାଲୁକା ଲାଗିବ ।

ମଦନ : ସେଇ କଥା ମୁଁ ଆରମ୍ଭରୁ କହୁଛି । ତୁମକୁ ଯଦି ମୂଷାମରା ପାପ ଘାରିଛି ତାହେଲେ ଚାଲ, ବାହାର । ଆଉ ଡ଼େରି କରନା । ତମେ ଆମ ସାଙ୍ଗରେ ଚାଲୁନା ଭାଉଜ । ଏ ମୂଷା ମରା ପାପରେ କ'ଣ ତମର କିଛି ଭାଗ ନାହିଁ ?

ମନୋଜ : ଏ ଥଟାଗୁଡ଼ା ମତେ ଆଦୌ ଭଲ ଲାଗୁନାହିଁ । ତମେ ବସି ଗପସପ ହୁଅ, ମୁଁ ଟିକେ ଗାଆଁ ଭିତରୁ ଆସୁଛି ।

ବନାନୀ : ଆମ କଥା ଯଦି ତୁମ ମନକୁ ନପାଉଛି, ତାହେଲେ ତମେ ଗାଆଁ ଭିତରକୁ ଯା, ସୁଦର୍ଶନ ପଣ୍ଡିତଙ୍କୁ ପଚାରି ପ୍ରାୟଶ୍ଚିତ୍ତର ଉପାୟଟା ବୁଝି ଆସିବ ।

ମନୋଜ : ଥରେ ପରା କହିଲି, ମତେ ଏ ଥଟା ପରିହାସ ଭଲ ଲାଗେ ନାହିଁ ।

ବନାନୀ : ହଉ ବାବା, ଆମେ ପାଟି ଚୁପ୍ କଲୁ, ତମେ ଯୁଆଡ଼େ ଯାଉଚ ଯା, ଯାହା କରୁଚ କର, ଯେତେବେଳେ ଫେରୁଛ ଫେର ।
(ମନୋଜ ଉଠି ଗାଆଁ ଭିତରକୁ ଗଲେ । ମନୋଜ ଯିବା ପରେ ବନାନୀ ଓ ମଦନ ଦୁହେଁ ବଡ଼ ପାଟିରେ ହସି ଉଠିଲେ ।)



# ଶେଷ ଦୃଶ୍ୟ

(ମନୋଜଙ୍କ ଘର । ସମୟ ସକାଳ । ମନୋଜ ଦାଢ଼ିକାଟିବା ପାଇଁ ଝରକା କଡ଼ରେ ବସିଛନ୍ତି । ମୁହଁରେ ଦାଢ଼ି । ପିନ୍ଧିଛନ୍ତି ଧଳା ହାଫ୍‌ପ୍ୟାଣ୍ଟ ଓ ଗଞ୍ଜି)

ମନୋଜ : ବନାନୀ ! ବନାନୀ !

ବନାନୀ : (ପ୍ରବେଶି) କ'ଣ ହେଲା ? ଏ ଝରକାଟା ପାଖରେ ବସି ଏମିତି ରଡ଼ି ଛାଡ଼ୁଛ କାହିଁକି ?

ମନୋଜ : ମୋ ଖିଅର ହେବା ଡ଼ବାଟା ଆଣିଲ ।

ବନାନୀ : ସେଇଠି ପରା ତମ ହାତ ପାଖରେ ସେଇ ଥାକରେ ଥୁଆ ହେଇଚି । ଆଜିକାଲି ତମେ ଖୁବ୍ ଅନ୍ୟମନସ୍କ ରହୁଛ ।
(ଖିଅର ହେବା ଡବାଟା ମନୋଜ ନିଜେ ଉଠି ଯାଇ ଆଣିଲେ)

ମନୋଜ : ହଉ ଦର୍ପଣଟା କୋଉଠି ଅଛି ଦିଅ । ଗୋଟେ ଜାଗାରେ ମଦେ ପାଣି ଦିଅ ।

ବନାନୀ : (ଦର୍ପଣ ଆଣି ଥୋଇଲେ) ନିଅ ।

ମନୋଜ : ଆଉ ପାଣି ?

ବନାନୀ ଦଉଚି ରୁହ । ସବୁକଥାରେ ଏମିତି ତରବର କାହିଁକି ହୁଅ ?
(ବନାନୀ ପାଣି ପାଇଁ ଆରଘରକୁ ଗଲେ । ଏଇ ସମୟରେ ଝରକା ସେପଟରେ ମନୋଜ ସେଇ ମୂଷାଟିକୁ ହଠାତ୍ ଦେଖି ଚିତ୍କାରକଲେ ।)

ମନୋଜ : (ଭୟରେ ଚିତ୍କାର କଲେ) ବ...ବ...ବନାନୀ । ବନାନୀ !

ବନାନୀ : (ଧାଇଁକି ଆସିଲେ) କ'ଣ ହେଲା ?

ମନୋଜ : ହେଇ ଦେଖିଲ ।

ବନାନୀ : କାଇଁ, କ'ଣ କୋଉଠି ?

ମନୋଜ : ଭୂ...ଭୂ...ଭୂତ । ଭୂତ ।

ବନାନୀ ଭୂତ କାଇଁ ? କାଇଁ ଏଠିତ କିଛି ନାହିଁ, କେହି ନାହିଁ ।

ମନୋଜ (ଝରକା ଆଡ଼କୁ ହାତ ବଢ଼ାଇ) ଏଇ, ଏଇ ଝ.ର. ଝରକା, ଝରକା ।

ଆନଂଦ ଚଂଦ୍ର ପତି

ବନାନୀ : କାହିଁ କ'ଣ ?

ମନୋଜ : ଭୂତ ।

ବନାନୀ : ଦିନଟାରେ ଭୂତ କୁଆଡୁ ଆସିବ ?

ମନୋଜ : ଝରକା ଆର ପଟେ ।

ବନାନୀ : କାହିଁ କ'ଣ ? ଝରକା ଆରପଟେତ ଦାଣ୍ଡଟା । ସେଠି କେହି ନାହିଁ

ମନୋଜ : ଝରକା ଆରପାଖ ଧାର୍‌ରେ । ସେଇଟା ।

ବନାନୀ : ସେଇଟା (ଠୋ ଠୋ ହୋଇ ହସିଲେ) ସେଇଟା ତ ମୂଷାଟେ ।

ମନୋଜ : ସେଇଟା ମୂଷା ନୁହଁ ।

ବନାନୀ : (ହସୁ ହସୁ) ଆଉ ?

ମନୋଜ : ନା, ସେଟା ମୂଷା ନୁହେଁ ମୂଷାର ଭୂତ ।

ବନାନୀ : ମୂଷାର ଭୂତ ? ତମେ କ'ଣ କହୁଚ ? ତମ ମୁଣ୍ଡ ଖରାପ ହେଲାଣି ନା କ'ଣ ।

ମନୋଜ : ସେ ମୂଷାଟାତ ମରିଗଲା, ତାକୁ କାଉ ନେଇ ଗଲା । ଏଇଟା ପୁଣି କୋଉଠୁ ଆସିଲା ? ଏଟା ନିଶ୍ଚୟ ସେଇ ମୂଷାର ଭୂତ ।

ବନାନୀ : ମୂଷାମାନେ ମଲେ କ'ଣ ଭୂତ ହୁଅନ୍ତି ?

ମନୋଜ : ମୁଁ ଜାଣିନାହିଁ । ହେଲେ...

ବନାନୀ : ହେଲେ ପୁଣି କ'ଣ ?

ମନୋଜ : ମୁଁ ଭଲ ଭାବରେ ଚିହ୍ନିଛି, ଏଇଟା ସେଇ ମୂଷା ।

ବନାନୀ ସେ ମୂଷାଟା ପରା ମରିଚି ?

ମନୋଜ : ହଁ ଯେ...

ବନାନୀ ମରିଚି ତ ପୁଣି ଯେ...କ'ଣ ?

ମନୋଜ ଏଇଟା ସେଇ ମୂଷା । ଯାରି ଅଣ୍ଟାରେ ଯନ୍ତା ପଡ଼ିଥିଲା । ଅଣ୍ଟାର ରୁମ ଗୁଡ଼ାକ ଉପୁରି ଯାଇଛି । ଏଇଟା ସେଇ ମୂଷା ।

ବନାନୀ ପ୍ରକାଶ ଆଉ ଅନୀତା ମୂଷାଟାକୁ ବାରିରେ ଛାଡ଼ି ଦେଇ ଆସିଥିଲେ । ପୁଣି ଯାଇ ଦେଖିବା ବେଳକୁ ମୂଷାଟା ନାହିଁ । ଆମେ ଭାବିଲେ ତାକୁ କାଉ ନେଇ ଯାଇଛି । କିନ୍ତୁ ପ୍ରକୃତରେ ମୂଷା ଫୁଲକୁଣ୍ଡ ପାଖରେ ଲୁଚିଲୁଚି ପଳେଇଥିଲା । ଏବେ ଏଇ ଝରକା ଧାରରେ ବସିଛି ।

ଆନଂଦ ଚଂଦ୍ର ପହି

ମନୋଜ : ତା ବି ହୋଇ ପାରେ ।

ବନାନୀ : ଏଟା ତା ହେଲେ ମୂଷାର ଭୂତ ନୁହ, ସେଇ ମୂଷା ।

ମନୋଜ : ହଁ ଏଇଟା ସେଇ ମୂଷା ।

ବନାନୀ : ତା ହେଲେ ମୂଷାଟା ବଞ୍ଚିଛି, ତମେ ଖାଲି ମିଛରେ ମୂଷାମରା ଅପରାଧରେ ଘାରି ହେଉଛ ।

ମନୋଜ : କିନ୍ତୁ ଏ ମୂଷାଟା ମୋତେ ଭୟ ନକରି ବଡ଼ ବଡ଼ ଆଖି କାଢ଼ି ଚାହିଁଛି । ଟିକେ ବି ଏପଟ ସେପଟ ହେଉ ନାହିଁ । ବନାନୀ !

ବନାନୀ କ'ଣ ?

ମନୋଜ ମୂଷାଟା ମୋ ମୁହଁରେ ଏତେ ସମୟ ଧରି କ'ଣ ଦେଖୁଛି ? ତୁମେ ଦେଖିଲ ମୋ ମୁହଁଟା କ'ଣ ଦିଶୁଛି ?

ବନାନୀ (ମନୋଜଙ୍କ ମୁହଁକୁ ଚାହିଁ) କାହିଁ କ'ଣ ଦିଶୁଚି ?

(ମନୋଜ ନିଜେ ଦର୍ପଣ ନେଇ ନିଜ ଚେହେରାକୁ ବିଭିନ୍ନ ଦିଗରୁ ଦେଖିଲେ)

ବନାନୀ ଏଁ ତମେ ଦର୍ପଣଟାରେ ନିଜକୁ ଏତେ କ'ଣ ଦେଖୁଛ ?

ମନୋଜ ମୁଁ ନିଜକୁ ଚିହ୍ନିବାକୁ ଚେଷ୍ଟା କରୁଚି । ଅନ୍ୟର ଆଖିକୁ ମୁଁ କେମିତି ଦେଖା ଯାଉଛି, ସେ କଥା ଜାଣିବାକୁ ଚେଷ୍ଟା କରୁଚି ।

ବନାନୀ ତମେ କ'ଣ ପାଗଳ ହେଇ ଗଲଣିନା କ'ଣ ?

ମନୋଜ (ଦର୍ପଣରେ ନିଜ ମୁହଁ ଦେଖି ଦେଖି) ମୁଁ କେମିତି ଦେଖା ଯାଉଛି ବନାନୀ ?

ବନାନୀ ତମେ ତମ ପରି ଦିଶୁଛ ।

ମନୋଜ : ମୋ ମୁହଁରେ ଦାଢ଼ିଉଠିି ।

ବନାନୀ ତମେ ଆଠ ଦିନ ହେଲା ଦାଢ଼ି କାଟିନ ।

ମନୋଜ ମୋ ଦେହରେ ଗଞ୍ଜି ।

ବନାନୀ : ଗଞ୍ଜି ପିନ୍ଧିବାଟା ସେମିତି କିଛି ଖରାପ କଥା ନୁହଁ ।

ମନୋଜ ମୁଁ ପିନ୍ଧିଛି ଗୋଟେ ଧଳା ହାଫ୍‌ପ୍ୟାଣ୍ଟ ।

ବନାନୀ : ତମେ ପ୍ରତିଦିନ ଗାଧୋଇବା ପୂର୍ବରୁ ଏମିତି ହାଫ୍ ପ୍ୟାଣ୍ଟ ଆଉ ଗଞ୍ଜି ପିନ୍ଧିଥାଅ ।

ମନୋଜ : ଏଇ ବେଶ ପୋଷାକରେ ମୋ ଚେହେରା କେମିତି ଦେଖାଯାଉଛି, ତମେ କହି ପାରିବ ବନାନୀ ?

ବନାନୀ : କେମିତି ?

ମନୋଜ : ମୁହଁରେ ଦାଢ଼ି, ଦେହରେ ଗଞ୍ଜି ଆଉ ଧଳା ହାଫ୍ ପ୍ୟାଣ୍ଟ୍ । ମୁଁ ଠିକ୍ ଜଣେ କଇଦୀ ପରି ଦିଶୁଛି ।

ବନାନୀ : କଇଦୀ ? ତମେ ଏସବୁ କ'ଣ କହୁଛ ?

ମନୋଜ : ମୂଷାଟା ଝରକା ରେଲିଂ ବାହାରେ ଠିଆ ହୋଇ ମତେ ଦେଖୁଛି । ମୁଁ କଇଦୀ ବେଶ ପୋଷାକରେ ଜେଲ୍ ଭିତରେ । ଏ ଝରକାର ବାଡ଼ ତାକୁ ଜେଲ୍ ବାଡ଼ ପରି ଦେଖା ଯାଉଛି । ମୁଁ ମୂଷାଟା ଦେଖୁଛି ସିଏ ଯନ୍ତା ବାହାରେ ଅଛି; କିନ୍ତୁ ମୂଷାମତେ ଦେଖୁଛି ମୁଁ ଏ ସଂସାର ଯନ୍ତାରେ ବନ୍ଦୀ ।

ବନାନୀ : ଏ ତୁମେ କ'ଣ କହୁଛ ?

ମନୋଜ : କେବଳ ମୁଁ ନୁହଁ, ଏ ପୃଥିବୀର ସବୁ ମଣିଷ ଚିରଦିନ ଯନ୍ତାରେ ବନ୍ଦୀ । ତାର ଚଲାପଥର ସୀମା ନିର୍ଦ୍ଦିଷ୍ଟ । ମଣିଷ ପଡ଼ି ଯାଇଥିବା ଯନ୍ତାର ବାଡ଼ ଦିନକୁ ଦିନ ଦୃଢ଼ ହୁଏ । ବନ୍ଧନ ନିବିଡ଼ ହୁଏ । ସିଏ ଯନ୍ତାରୁ ମୁକ୍ତି ପାଇଁ ଯେତେ ଛାଟିପିଟି ହୁଏ ତା ବେକରେ ଲାଗିଥିବା ଦଉଡ଼ି ସେତେ ପାକଳ ହୁଏ, ଗଣ୍ଠି ସେତେ ଟାଣ ହୁଏ ।

ବନାନୀ : ଯନ୍ତା ! ବନ୍ଧନ ! ଦଉଡ଼ି ! ତମେ ଏସବୁ କ'ଣ କହୁଛ ?

ମନୋଜ : ଏକା ତୁମେ ନୁହଁ ବନାନୀ ! ପୃଥିବୀର କୌଣସି ମଣିଷ ବୁଝିପାରେ ନା ଯେ ସିଏ ଯନ୍ତାରେ ପଡ଼ିଛି । ତାର ଜନ୍ମ ବନ୍ଦୀଶାଳାରେ । ତା ନିଜ ଘର ତା ପାଇଁ କାରାଗାର । (ବନାନୀ ଗୋଟେ ବାଡ଼ି ନେଇ ମୂଷାଟାକୁ ପିଟି ଦେବାକୁ ଉଦ୍ୟମ କରୁଥିଲେ । ତାଙ୍କ ହାତରୁ ବାଡ଼ିଟାକୁ ଛଡ଼ାଇ ରଖିଲେ ମନୋଜ ।)

ମନୋଜ : ତମେ ଇଏ କ'ଣ କରୁଛ ବନାନୀ ?

ବନାନୀ : ସିଏ ବଡ଼ ବଡ଼ ଆଖି କାଢ଼ି ଆମକୁ ଡରାଉଛି । ଛାଡ଼ ମୁଁ ତାକୁ ପିଟିଦିଏ । ଛାଡ଼ ମତେ ।

ମନୋଜ : ମୂଷା ଆମକୁ ଡରାଉ ନାହିଁ ବନାନୀ । ଆମକୁ, ଆମ ଆଚରଣକୁ ଦେଖି ତା ଆଖି ବିସ୍ମୟରେ ବଡ଼ ବଡ଼ ହୋଇଯାଉଛି ।

ବନାନୀ ବିସ୍ମୟରେ ?

ମନୋଜ : ତା ଦୃଷ୍ଟିରେ ମଣିଷ ପୃଥିବୀର ସବୁଠୁ ବଡ଼ ବିସ୍ମୟ ।

ବନାନୀ : ମୁଁ ତୁମ କଥା ଜମା ବୁଝିପାରୁ ନାହିଁ ।

ମନୋଜ ତମେ ନିଜେ କାରାଗାରରେ ଥାଇ ମଧ୍ୟ ଆଜି ଯେମିତି ଝରକା ରେଲିଂରେ ବାଡ଼ି ଗଳାଇ ମୂଷାଟିକୁ ପିଟି ଦେବାକୁ ଯାଉଛ, ଏ ମଣିଷ ସେମିତି ଯନ୍ତାରେ ପଡ଼ି ନିଜେ ଯନ୍ତ୍ରଣା- ଦାୟକ ଜୀବନ ଯାପନ କରୁଥିଲେ ବି ସାମାନ୍ୟ ସୁଯୋଗ ପାଇବାମାତ୍ରେ ଅନ୍ୟକୁ ଆକ୍ରମଣ କରେ । ସିଏ ବୁଝିପାରେ ନାହିଁ ଯେ ଅନ୍ୟକୁ ଯନ୍ତ୍ରଣା ଦେଲେ ନିଜର ଯନ୍ତ୍ରଣା କମେ ନାହିଁ, ବରଂ ଉଭୟଙ୍କ ଯନ୍ତ୍ରଣା ବଢ଼େ । ସହାନୁଭୂତିଶୀଳ ହେଲେ ପରସ୍ପରର ସହଯୋଗରେ ଯନ୍ତାଜୀବନର ଯନ୍ତ୍ରଣା ଭୁଲିହୁଏ, ପରସ୍ପରର ହାତ ଧରାଧରି ହୋଇ ସୁଖର ସନ୍ଧାନ କରିହୁଏ ।

(ଦୂରରୁ ଶୁଭିଲା ସଂସ୍କୃତ ଶ୍ଳୋକ :-)

ଜଂଜାଳପୂର୍ଣ୍ଣ ଜନ-ଜୀବନ ବନ୍ଦୀଶାଳା
କ୍ଳେଶେନ ଯନ୍ତ୍ରିତ ଜନୋପରଦୁଃଖ ସୃଷ୍ଟୌ,
ଯଚ୍ଛେଷ୍ଟତେ ନହି ତଦେବ ହିତାୟ କସ୍ୟ
ଶାନ୍ତିଂ ମିଥଃ ସୃଜତି ହୃଦ୍ୟ ସହାନଭୂତି ।

(ଶ୍ଳୋକ ଆବୃତ୍ତି ସମୟରେ ମନୋଜ ଓ ବନାନୀ ଫ୍ରିଜ୍ ହୋଇ ଠିଆହୋଇଥିଲେ)





ଆନଂଦ ଚଂଦ୍ର ପହିଙ୍କ ଜନ୍ମ : ୧୯୪୬ ମସିହା, ଏପ୍ରିଲ ୧୧ ତାରିଖ । ଗ୍ରାମ : ନିହଲପ୍ରସାଦ, ଢେଙ୍କାନାଳ । ଶ୍ରୀ ପହି ଜଣେ ବିଶିଷ୍ଟ ଗାଳ୍ପିକ ଓ ପ୍ରତିଷ୍ଠିତ ନାଟ୍ୟକାର ।

ଶ୍ରୀ ପହିଙ୍କ ଦ୍ୱାରା ରଚିତ କ୍ଷୁଦ୍ରଗଳ୍ପ ପୁସ୍ତକ :

- ❑ ଧୂଳିଝଡ଼
- ❑ ମୁହଁ ସଂଚ
- ❑ ଅନେକ ମୁହଁ
- ❑ ଅନ୍ୟ ଅରଣ୍ୟ
- ❑ ଷାଢ୍ୟ
- ❑ ଚରିତ୍ରର ବିହାର

ଆନଂଦ ଚଂଦ୍ର ପହିଙ୍କ ଦ୍ୱାରା ରଚିତ ବେତାର, ଦୁରଦର୍ଶନ ଓ ମଞ୍ଚ ନାଟକ :

- ❑ ଅନ୍ୟ ଏକ ସିଦ୍ଧାର୍ଥ (ସର୍ବ ଭାରତୀୟ ବେତାର ନାଟକ ରଚନା ପ୍ରତିଯୋଗିତା ୧୯୯୫-୯୬ ରେ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ)
- ❑ ଭାଙ୍ଗି ପଡୁଥିବା ଭୂମି (ସର୍ବଭାରତୀୟ ବେତାର ନାଟକ ରଚନା ପ୍ରତିଯୋଗିତା ୧୯୯୨-୯୩ରେ ଦ୍ୱିତୀୟ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ) (ପୁସ୍ତକ ଭାବେ ପ୍ରକାଶିତ)
- ❑ ରେଖାଚିତ୍ର ଆକାଶବାଣୀ ବାର୍ଷିକ ପୁରସ୍କାର ପ୍ରଦାନ ଉତ୍ସବ ୧୯୯୨ ରେ ମେରିଟ୍ ସାର୍ଟିଫିକେଟ୍ ପ୍ରାପ୍ତ(ପୁସ୍ତକ ଭାବେ ପ୍ରକାଶିତ)
- ❑ ହଜିଯାଇଥିବା ମଣିଷ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ପ୍ରତୀକ୍ଷାରେ ପରୀକ୍ଷିତ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଦୁଇ ଦିଗନ୍ତ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଆକାଶର ରଙ୍ଗ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଡର - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଖାଲିହାତର ଛବି - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଆଲୋକର ଅନ୍ଧକାର
- ❑ ଅନ୍ୟ ଅରଣ୍ୟ
- ❑ ଯନ୍ତା
- ❑ ନୀଳକଣ୍ଠ
- ❑ ଚିଠି
- ❑ ଆକ୍ସିଡେଣ୍ଟ
- ❑ ବୁଢ଼ିଆଣୀ ଜାଲ
- ❑ ଶୋଷ
- ❑ ଆନୁଆଲ୍ ଫଙ୍କସନ୍
- ❑ ଅଚିହ୍ନା ଅପରାଧ
- ❑ ନୂଆ ସକାଳ
- ❑ ସିଡ଼ି
- ❑ ପରିତ୍ୟକ୍ତ
- ❑ ଅମୃହାଁ ଦେଉଳ
- ❑ ମୁହଁ ସଂଚ
- ❑ କାଲି ଆଜି କାଲି
- ❑ ଆଗାମୀ ସୂର୍ଯ୍ୟୋଦୟ
- ❑ କୁଣିଆ ଝମେଲା
- ❑ ଝିଅଦେଖା
- ❑ ରତ୍ନ
- ❑ ସୂର୍ଯ୍ୟପରାଗ
- ❑ ଦୃଷ୍ଟି
- ❑ ଝଡ଼ଗ୍ରସ୍ତ ଦୁଇଟି ଫୁଲ
- ❑ ଅବୁଝା ରାଗ
- ❑ ସଂପର୍କର ତିନିଭାର
- ❑ ଅନ୍ତରଙ୍ଗ ଆକର୍ଷଣ